# ପରିଚ୍ଛେଦ-୧

## ସେ ଜଣେ ବଡ ବୈଜ୍ଞାନିକ

ଯେ କେବଳ ବିଜ୍ଞାନ ପଢ଼ନ୍ତି ସେ ବୈଜ୍ଞାନିକ ନୁହନ୍ତି । ସେ ଜଣେ ବିଜ୍ଞାନ ଛାତ୍ର । ଯେ ପଢ଼ାନ୍ତି ସେ ବି ବୈଜ୍ଞାନିକ ହୋଇ ନପାରନ୍ତି । ସେ ଜଣେ ବିଜ୍ଞାନ ଅଧ୍ୟାପକ ବା ଶିକ୍ଷକ । ତାହାହେଲେ ବୈଜ୍ଞାନିକ କିଏ ? ଯେ କିଛି ନୂଆ ବିଜ୍ଞାନ କଥା ଆବିଷ୍କାର କରିଥାନ୍ତି କିମ୍ବା ନୂଆ ବିଜ୍ଞାନ ଯନ୍ତ୍ରପାତି ଉଦ୍ଭାବନ କରିଥାନ୍ତି ତାଙ୍କୁ ବୈଜ୍ଞାନିକ କୁହାଯାଏ । ଏଥିପାଇଁ ସେ ଅନେକ ବିଜ୍ଞାନବହି ପଢ଼ନ୍ତି, ବିଜ୍ଞାନପରୀକ୍ଷା କରନ୍ତି, ଦିନରାତି ସେ ବିଷୟକୁ ଏପଟ ସେପଟ କରି ଚର୍ଚ୍ଚା କରନ୍ତି । ଶେଷରେ ଯାହା ପାଆନ୍ତି ତାହା ସତ୍ୟ ହୋଇଯାଏ । ତେଣିକି ଯେତେ ପ୍ରକାରେ ଯିଏ ପରୀକ୍ଷା କଲେ ବି ଠିକ୍ ସେହି ଏକା ଫଳ ମିଳେ ।

କୌଣସି ଦେଶରେ ଏହି ବୈଜ୍ଞାନିକଙ୍କ ସଂଖ୍ୟା ଶହ ଶହ, ପୃଥିବୀରେ ହଜାର ହଜାର । ଏମାନଙ୍କ ଭିତରୁ ବଡ ବୈଜ୍ଞାନିକ କିଏ ? ଏକଥା ସହଜେ କହି ହେବନାହିଁ । କେବଳ ବୈଜ୍ଞାନିକମାନେ ତାହା କହି ପାରିବେ । ସାଧାରଣ ବିଚାରରେ ବଡ ବୈଜ୍ଞାନିକମାନେ ଯାହା ବାହାର କରିଥାନ୍ତି ତାହା ସବୁଦିନ ପାଇଁ ପ୍ରାୟ ସତ ହୋଇ ରହେ । ଖାଲି ସେତିକି ନୁହେଁ, ସେଥିରୁ ଆହୁରି କେତେ ନୂଆ କଥା ବାହାରେ । ବହୁଦିନୁ ବୁଝି ହେଉ ନଥିବା ଅନେକ କଥା ତାଙ୍କ ଗବେଷଣା ଯୋଗୁଁ ବୁଝି ହୋଇଯାଏ । ତାଙ୍କ ଆବିଷ୍କାରକୁ ସହଜରେ ଭୁଲି ହୁଏ ନାହିଁ । ସେହି ଆବିଷ୍କାରକଙ୍କୁ ଲୋକେ ଜଣେ ବଡ ବୈଜ୍ଞାନିକ ବୋଲି କହନ୍ତି ।

ସେଭଳି ବଡ ବଡ ବୈଜ୍ଞାନିକ ପୃଥିବୀରେ ବେଶି ନାହାନ୍ତି । ଗତ ତିନିଶହ ଚାରିଶହ ବର୍ଷ ଭିତରେ ଖୁବ୍ ହେଲେ ସେଭଳି ବୈଜ୍ଞାନିକ ଶହେ ବାହାରିଛନ୍ତି । ସେମାନେ ହେଲେ ନିଉଟନ୍, ଆଇନ୍‌ଷ୍ଟାଇନ୍, ଡାରଉଇନ୍, ମେଣ୍ଡେଲ, ଫାରାଡେ, ମାକ୍ସୱେଲ, ଡିରାକ୍, ହାଇଜେନବର୍ଗ ଆଦି । ଏହି ବୈଜ୍ଞାନିକମାନେ କୌଣସି ଏକ ବିଜ୍ଞାନ ବିଷୟକୁ ଆଦରି ନିଅନ୍ତି । ସେଥିରେ ନାନା ପ୍ରକାର ପରୀକ୍ଷା କରନ୍ତି । ସେହି ଗବେଷଣା ବେଳେ ତାହା ବଡ କି ସାନ ବିଚାର କରନ୍ତି ନାହିଁ । ଯାହା ତାଙ୍କୁ ଭଲ ଲାଗିଲା, ଯାହା ବୁଝି ହେଲାନି ତାକୁ ବୁଝିବା ପାଇଁ ସେମାନେ ଲାଗି

ପଡନ୍ତି । ଶେଷରେ ତାହା ଗୋଟିଏ ବଡ ଆବିଷ୍କାର ହୋଇ ଉଠେ ।

ଏହି ବଡ ଆବିଷ୍କାର ସବୁ ଆଗେ ଖୁବ୍ ଅଳ୍ପ କେତୋଟି ଦେଶରେ ହେଉଥିଲା । ସେହି ଦେଶଗୁଡ଼ିକ ହେଲା – ଇଂଲଣ୍ଡ, ଜର୍ମାନୀ ଓ ଫ୍ରାନ୍‌ସ । ପରେ ଯୁକ୍ତରାଷ୍ଟ୍ର ଆମେରିକା ଓ ରୁଷିଆ ଏ ଦିଗରେ ବହୁତ ଆଗେଇଲେ । ଆମ ଦେଶ ଭାରତ ଏମାନଙ୍କ ତୁଳନାରେ ବହୁତ ପଛରେ ପଡିଥିଲା । କାରଣ ଭାରତରେ ଗବେଷଣା କରିବାର ସୁବିଧା ନଥିଲା । ଦେଶରେ କେତେ ରାଜା ରାଜୁତି କରୁଥିଲେ । ଦେଶ ଭାଗ ଭାଗ ହୋଇ ଯାଇଥିଲା । ଗୋଟିଏ ରାଜ୍ୟରୁ ଅନ୍ୟ ରାଜ୍ୟକୁ ଯାଆସ କରିବାର ବିଶେଷ ସୁବିଧା ନଥିଲା । କିଏ ଜଣେ କ'ଣ ଜାଣିଥିଲେ ଅନ୍ୟଜଣେ ଜାଣିପାରୁ ନଥିଲା । ପରେ ଏ ଦେଶକୁ ଇଂରେଜମାନେ ଦଖଲ କଲେ, ଶାସନ କଲେ ପ୍ରାୟ ତିନିଶହ ବର୍ଷ । ପରାଧୀନ ଦେଶରେ କ'ଣ ଅଭାବ ରହିଲା ତାହା କିଏ ବା ବିଚାର କରିବ ?

ତଥାପି ନିଜ ନିଜ ଚେଷ୍ଟାରେ କେତେକ ବିଜ୍ଞାନରେ ଖୁବ୍ ନାଁ କରିଥିଲେ । ସେମାନଙ୍କ ମଧ୍ୟରେ ଜଗଦୀଶଚନ୍ଦ୍ର ବୋଷ, ଚନ୍ଦ୍ରଶେଖର ଭେଙ୍କଟ ରାମନ, ସତ୍ୟେନ୍ଦ୍ର ନାଥ ବୋଷ, ମେଘନାଦ ସାହା, ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ. ବୀରବଲ ସାହାନି ପ୍ରମୁଖ ଖୁବ୍ ଜଣାଶୁଣା । କିନ୍ତୁ ଏମାନଙ୍କ ମଧ୍ୟରେ ଜଣେ ତାଙ୍କ ସିଦ୍ଧାନ୍ତ ଦ୍ୱାରା ସାରା ପୃଥିବୀରେ ଚହଳ ପକାଇ ଦେଲେ, ସେ ପ୍ରାୟ ୬୫ ବର୍ଷ ଗବେଷଣା କରି ଏ ଦେଶବାସୀଙ୍କୁ ଚକିତ କରିଦେଲେ । ସେହି ବିଶ୍ୱବିଖ୍ୟାତ ବୈଜ୍ଞାନିକ ହେଉଛନ୍ତି ଚନ୍ଦ୍ରଶେଖର ଭେଙ୍କଟ ରାମନ । ଇଂରେଜ ସରକାର ତାଙ୍କ କୃତିତ୍ୱ ପାଇଁ ତାଙ୍କୁ ସାର୍ ଉପାଧି ଦେଇଥିଲେ । ସେଥିଲେ ପ୍ରକୃତରେ ଜଣେ ବଡ ବୈଜ୍ଞାନିକ ।

ରାମନଙ୍କ ବିଷୟରେ ଆଇନ୍‌ଷ୍ଟାଇନ୍ ଯାହା କହିଛନ୍ତି ତାହା ସହଜରେ ଭୁଲି ହେବନି । ବିଜ୍ଞାନରେ ଆଇନ୍‌ଷ୍ଟାଇନ୍‌ଙ୍କ ନାଁ ଅତି ଜଣାଶୁଣା । ସେ ଆପେକ୍ଷିକବାଦ ଆବିଷ୍କାର କରି ବିଜ୍ଞାନରେ ନୂଆ ଯୁଗ ଆରମ୍ଭ କଲେ । ଫଳରେ ଅନ୍ୟମାନଙ୍କ ଭାବନାସବୁ ଓଲଟପାଲଟ ହୋଇଗଲା । ସେତେବେଳେ ତାଙ୍କ ଆପେକ୍ଷିକବାଦର ମର୍ମ ଖୁବ୍ ଅଳ୍ପ କେତେଜଣ ବୈଜ୍ଞାନିକ ବୁଝି ପାରୁଥିଲେ । ସେହି ଯୁଗସ୍ରଷ୍ଟା ବୈଜ୍ଞାନିକଙ୍କ ମତରେ ଆଧୁନିକ ପଦାର୍ଥ ବିଜ୍ଞାନ ଇତିହାସରେ ରାମନ ଏକ ଉଜ୍ଜ୍ୱଳ ତାରକା । ବିଜ୍ଞାନ ଜଗତରେ ନିଉଟନ, ଡାରଉଇନ୍, ଜଗଦୀଶଚନ୍ଦ୍ର ବୋଷଙ୍କ ଶ୍ରେଣୀରେ ତାଙ୍କୁ ନିଆଯିବ । ତାଙ୍କ ପ୍ରଶଂସନୀୟ ପ୍ରତିଭା ବହୁମୁଖୀ । 'ରାମନ ସିଦ୍ଧାନ୍ତ' ବିଜ୍ଞାନ କ୍ଷେତ୍ରରେ ଭାରତର ଏକ ବଳିଷ୍ଠ ପଦକ୍ଷେପ । ପଦାର୍ଥ ବିଜ୍ଞାନର ଏହି ଆବିଷ୍କାର ତାଙ୍କୁ ଅଭିଭୂତ କରିଥିଲା ।

## ରାମନଙ୍କ ପିଲାଦିନ କଥା

ରାମନ ଗୋଟିଏ ଗାଁରେ ଜନ୍ମ ହୋଇଥିଲେ । ଗାଁ ଟିର ନାଁ ଥିରୁଭାନାଇ କାଭାଲ । ତାହା ତିରୁଚିରାପଲ୍ଲୀ (ଆଗ ନାଁ ତ୍ରିଚିନାପଲ୍ଲୀ) ନିକଟରେ । ରାମନଙ୍କ ବାପାଙ୍କ ନାଁ ଶ୍ରୀ ଚନ୍ଦ୍ରଶେଖର ଆୟାର । ଶ୍ରୀ ଆୟାର ବି.ଏ ପଢ଼ିଲାବେଳେ ତାଙ୍କ ଘରପାଖ ସ୍କୁଲରେ ଶିକ୍ଷକ ଥାନ୍ତି । ବି.ଏ. ପାସ କଲାପରେ ସେ ବିଶାଖାପାଟଣାରେ ଅଧ୍ୟାପକ (ଲେକ୍‌ଚରର) ଚାକିରିଟିଏ ପାଇଲେ । ସେଠାରେ ତାଙ୍କୁ ଗଣିତ ଓ ପଦାର୍ଥ ବିଜ୍ଞାନ ପଢ଼ାଇବାକୁ ହେଲା ।



ବାପା- ଚନ୍ଦ୍ରଶେଖର ଆୟାର, ମା- ପାର୍ବତୀ ଆମ୍ମାଲ

ଏବେ ଶ୍ରୀ ଆୟାର ପିଲାପିଲିଙ୍କୁ ଧରି ବିଶାଖାପାଟଣା ବାହାରିଲେ । ସେତେବେଳକୁ ରାମନଙ୍କୁ ମାତ୍ର ଚାରିବର୍ଷ । ବିଶାଖାପାଟଣା ସମୁଦ୍ର କୂଳରେ । ପିଲାବେଳୁ ରାମନ ସମୁଦ୍ରକୂଳରେ ରହିବାର ସୁଯୋଗ ପାଇଲେ । ହଁ, ଏହାକୁ ଏକ ସୁଯୋଗ କୁହାଯିବ । କାରଣ ଅନେକ ପିଲା ସମୁଦ୍ର ଦେଖି ନାହାନ୍ତି । ବଡ ହେବାଯାଏ ଦେଖନ୍ତି ନାହିଁ ମଧ୍ୟ । ସେମାନେ ସମୁଦ୍ରଠାରୁ ବହୁ ଦୂରରେ ଥାନ୍ତି । ସମୁଦ୍ରକୂଳ ବାଲି ଉପରେ ଦୌଡାଦୌଡି କରି ଯେ ଖେଳିଛି ସେ ଜାଣେ ତାହା କେତେ ମଜା ।

ଉପରେ ଅନନ୍ତ ନୀଳ ଆକାଶ । ଖୁବ୍ ପାଖରେ ନୀଳ ସାଗର । କୁଆଡେ

ଲମିଛି ତାହାର ସୀମା ବାରି ହେଉନାହିଁ । ଦୂରକୁ ଅନେଇଲେ ମନେହୁଏ ନୀଳ ଆକାଶ ଯେପରି ସିଧା ନୀଳ ସମୁଦ୍ରରୁ ଉଠି ଯାଇଛି । ଖଣ୍ଡ ଖଣ୍ଡ ବାଦଲ ଠାଏ ଠାଏ ସମୁଦ୍ର ଓ ଆକାଶର ସୀମାନ୍ତ ଘୋଡାଇ ପକାଇଛି । ପ୍ରକୃତିର କି ବିଚିତ୍ର ଲୀଳା । ବାଳକ ରାମନ ସକାଳ ଓ ସଞ୍ଜରେ ଆକାଶ ଓ ସମୁଦ୍ରର ଏ ଅପୂର୍ବ ମିଳନ ଦେଖି ଦେଖି ଆତ୍ମହରା ହେଉଥିଲେ ।

ଏମିତି ବୁଲାବୁଲି କରି ସେ ପଢ଼ାପଢ଼ିରେ ଅବହେଳା କରୁନଥିଲେ । ମାତ୍ର ଏଗାର ବର୍ଷ ବୟସରେ ମାଟ୍ରିକ୍ ପାସ କରିଥିଲେ । ଏବେ ୧୫ ବର୍ଷ ନହେଲେ ମାଟ୍ରିକ୍ ପାସ କରି ହେଉନି । କେବଳ ସେତିକି ନୁହେଁ, ମାଟ୍ରିକ୍ ପରୀକ୍ଷାରେ ସେ ପ୍ରଥମ ହୋଇଥିଲେ । ତାପରେ ସେ ତାଙ୍କ ବାପାଙ୍କ କଲେଜରେ ନାଁ ଲେଖାଇଲେ । ସେଠାରେ ଆଉ ଦିବର୍ଷ ପଢ଼ିଲେ । ସେତେବେଳେ ସେ ଦିବର୍ଷର ପାଠକୁ ଏଫ୍.ଏ. କୁହାଯାଉଥିଲା । ଏଫ୍.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେଲେ । ସେତବେଳକୁ ତାଙ୍କ ବୟସ ମାତ୍ର ୧୩ ବର୍ଷ ।

ଭଲ ପାଠ ପଢ଼ିବା ସଙ୍ଗେ ସଙ୍ଗେ ସେ ଅନର୍ଗଳ ଭାଷଣ ଦେଇ ପାରୁଥିଲେ । ସୁନ୍ଦର ପ୍ରବନ୍ଧ ମଧ ଲେଖିପାରୁଥିଲେ । ସେଥିରେ ପୁଣି ୪ଟି ଭାଷାରେ ଦଖଲ ଥିଲା । ମାତୃଭାଷା ତାମିଲ, ସେଥିରେ ତ କହିପାରିବା ଓ ଲେଖାଲେଖି କରିବା ସାଧାରଣ କଥା । ଛୋଟ ପିଲାବେଳେ ଭାଇଜାଗ୍ (ବିଶାଖାପାଟନାମ୍)ରେ ୧୦ ବର୍ଷ ରହି ତେଲୁଗୁଭାଷାରେ ଦଖଲ ଆସିଲା । ସେତେବେଳେ ତ ଇଂରେଜ ଶାସନ । ସ୍କୁଲ କଲେଜ, କୋର୍ଟ କଚେରୀ ଚାରିଆଡେ ଇଂରାଜୀର ଆଦର । ଇଂରାଜୀ ଭାଷାରେ ତାଙ୍କର ଅସାଧାରଣ ଦକ୍ଷତା ଥିଲା ।

ଏ ତିନୋଟି ଭାଷା ବ୍ୟତୀତ ସେ ଅନ୍ୟଏକ ଭାଷାକୁ ଆଦର କରୁଥିଲେ । ତାହା ସଂସ୍କୃତ । ଯେ ମୂଳରୁ ଗଣିତ ଓ ପଦାର୍ଥବିଜ୍ଞାନ ଏତେ ଆଦରରେ ପଢୁଥିଲେ, ସବୁ ପରୀକ୍ଷାରେ ପ୍ରଥମ ହେଉଥିଲେ ସେ ୪ଟି ଭାଷା ଶିଖିବାକୁ ବେଳ ପାଇଲେ କିପରି ? ଖାଲି ତ ଶିଖି ନଥିଲେ, ବେଶ୍ ଦକ୍ଷତା ଅର୍ଜନ କରିଥିଲେ । ସେଇ ଭାଷା ଭିତରେ ପୁଣି ସଂସ୍କୃତ ଥିଲା । ସଂସ୍କୃତ ବ୍ୟାକରଣଗତ ଭାଷା, ଶୃଙ୍ଖଳାରେ ପରିପୂର୍ଣ୍ଣ । ଏହା ପ୍ରତି ସ୍ୱତନ୍ତ୍ର ଆଗ୍ରହ ନଥିଲେ ଶିଖି ହୁଏ ନାହିଁ ।

ରାମନଙ୍କର ସଂସ୍କୃତ ପ୍ରତି ସ୍ୱତନ୍ତ୍ର ଆଗ୍ରହ ଥିଲା । ଏହି ସ୍ୱତନ୍ତ୍ର ଆଗ୍ରହ ପୂରାପୂରି ପାରିବାରିକ । ତାଙ୍କ ମା ପାର୍ବତୀ ଆମଲ ସଂସ୍କୃତ ଜାଣିଥିଲେ । ସେ ତାଙ୍କ ବାପାଙ୍କଠାରୁ ଏହା ଶିଖିଥିଲେ । ରାମନଙ୍କ ଅଜା (ମା'ଙ୍କ ବାପା)ଙ୍କ ନାଁ ସପ୍ତର୍ଷି ଶାସ୍ତ୍ରୀ । ସେ ଜଣେ ସଂସ୍କୃତ ପଣ୍ଡିତ ଥିଲେ । ତାଙ୍କ ପିଲାଦିନେ ସେ ଚାଲି ଚାଲି ବଙ୍ଗର ନବଦ୍ୱୀପକୁ ଆସିଥିଲେ । ଏହା ପ୍ରାୟ ୨ ହଜାର କିଲୋମିଟର

ଦୂର । ସେଠାରେ ସେ ନ୍ୟାୟଶାସ୍ତ୍ର ସଂସ୍କୃତରେ ଅଧ୍ୟୟନ କରିଥିଲେ । ସେହି ପଣ୍ଡିତଙ୍କ ନାତି ରାମନ ତାଙ୍କ ମାମୁଁ ଘରେ ଜନ୍ମ ହୋଇଥିଲେ । ଦକ୍ଷିଣର ପରମ୍ପରା – ଝିଅ ସନ୍ତାନ ଜନ୍ମ କରାଇବାକୁ ବାପଘରକୁ ଯାଏ ।

ରାମନଙ୍କ ବାପାଙ୍କ ବାପା ରାମନାଥନ୍ ମଧ୍ୟ ତାମିଲ ଭାଷାରେ ଜଣେ ପଣ୍ଡିତ ଥିଲେ । ଏହି ଭାଷାବିଦ୍‌ମାନଙ୍କ ଉତ୍ତରାଧିକାରୀ ରାମନ ଭାଷାକୁ ହତାଦର କରିବେ ବା କିପରି ? ସୁଖର କଥା ସେ ଭାଷାଶିକ୍ଷାରେ ହଜି ଯାଇ ନାହାନ୍ତି । ନହେଲେ ଭାରତ ତାହାର ଜଣେ ବଡ ବୈଜ୍ଞାନିକଙ୍କୁ ହରାଇ ବସିଥାନ୍ତା ।



ଭାଇ- ସି. ଏସ୍. ଆୟାର

କେବଳ ସେତିକି ନୁହେଁ ରାମନ ପିଲାଦିନୁ ଖୁବ୍ ଭଲ ପଢ଼ି ନଥିଲେ ଏତେଦୂର ଆସି ପାରି ନଥାନ୍ତେ । ସେତେବେଳେ ଛୋଟ ପରିବାର କଥା ଚଳି ନଥିଲା । ରାମନଙ୍କର ଆଠଟି ଭାଇଭଉଣୀ ଥିଲେ । ପାଞ୍ଚଟି ଭାଇ ଓ ତିନିଟି ଭଉଣୀ । ରାମନ ଥିଲେ ପରିବାରର ଦ୍ୱିତୀୟ ସନ୍ତାନ । ସେତେବେଳେ ପରିବାର ଯୋଜନା ଚଳୁଥିଲେ ବି ସେ ନିଶ୍ଚୟ ଜନ୍ମିଥାନ୍ତେ । ସେ ତାଙ୍କ ଅଜାଙ୍କ ଗାଁ ତିରୁଭାନାଇକାଭାଲରେ ୧୮୮୮ ମସିହା ନଭେମ୍ବର ୭ ତାରିଖରେ ଜନ୍ମ ହୋଇଥିଲେ ।

## କଲେଜ ପଢ଼ା

ବିଶାଖାପାଟନାମ୍‌ରେ ବି.ଏ. ପଢ଼ିବାର ସୁବିଧା ନ ଥିଲା । ରାମନ ବୃତ୍ତିପାଇ ବି.ଏ. ପଢ଼ିବାକୁ ମାନ୍ଦ୍ରାଜ ଗଲେ । ମାନ୍ଦ୍ରାଜର ପ୍ରେସିଡେନ୍‌ସି କଲେଜରେ ମାତ୍ର ୧୩ ବର୍ଷ ବୟସରେ ସେ ନାଁ ଲେଖାଇଲେ । ଅନ୍ୟ ସାଙ୍ଗ ପିଲାଙ୍କଠାରୁ ସେ ଖୁବ୍ ଛୋଟ ଦିଶୁଥିଲେ । ଥରେ ତାଙ୍କ ଇଂରାଜୀ ପ୍ରଫେସର ଇ.ଏଚ୍. ଇଲିୟଟ୍ ତାଙ୍କୁ ଭୁଲରେ ଜଣେ ସ୍କୁଲଛାତ୍ର ବୋଲି ଭାବିଲେ । ପଚାରିଲେ – ତମେ କ'ଣ ବି.ଏ ଶ୍ରେଣୀର ଛାତ୍ର ? ରାମନ ବୟସରେ ସାନ, ତା ଛଡା ଦେଖିବାକୁ ପତଳା ଓ ଦୁର୍ବଳ ଥିଲେ ।



ବି.ଏ. ଶ୍ରେଣୀର ଛାତ୍ର (ଉପରୁ ୨ୟ ଧାଡ଼ି ଡାହାଣପଟୁ ୪ର୍ଥ)

ସେହି ଅଳ୍ପ ବୟସରେ ଓ ଦୁର୍ବଳ ସ୍ୱାସ୍ଥ୍ୟରେ ସେ ଶ୍ରେଣୀର ପାଠ ଛଡା ଯାହାସବୁ ପଢ଼ିଥିଲେ ଆଜି ଶୁଣିଲେ ବିଶ୍ୱାସ ହୁଏନା । ମାଧ୍ୟମିକ ସ୍କୁଲରେ ପଢୁଥିବା ବେଳେ ୧୧ ବର୍ଷ ବୟସ ବେଳକୁ ସେ ତ୍‌ସେତେବେଳର ବୈଜ୍ଞାନିକ ଟିଣ୍ଡଲ, ମାଇକେଲ ଫାରାଡେ ଓ ଫନ୍ ହେଲମହୋଲସଙ୍କ ଲେଖାମାନ ପଢ଼ି ସାରିଥିଲେ । କେହି କେହି କହନ୍ତି ସ୍କୁଲ ଛାତ୍ର ଥିଲାବେଳେ ସେ ଡାଇନାମୋଟିଏ ତିଆରି କରିଥିଲେ । ଥରେ ତାଙ୍କ ଦେହ ଭଲ ନଥିଲା । ସେ ବିଛଣାରେ ପଡି ରହିଥିଲେ । ଲେଡେନ୍ ଜାର(ଯେଉଁଥିରେ

ବିଦ୍ୟୁତ୍ ସଂଗୃହୀତ ହୁଏ)ଟିଏ ଦେଖିବାକୁ ତାଙ୍କର ଇଚ୍ଛା ହେଲା । ବାପାଙ୍କ କଲେଜରେ ସେହି ଉପକରଣଟି ଥାଏ । ତାକୁ ଆଣିବା ପାଇଁ ବାପାଙ୍କ ପାଖରେ ଜିଗର କଲେ । ତାଙ୍କ ଘରେ କହନ୍ତି ସେହି ଉପକରଣଟି ଦେଖିଲା ପରେ ତାଙ୍କ ଆଖିକୁ ନିଦ ଆସିଲା ।

ରାମନ କଲେଜକୁ ଆସିଲାବେଳକୁ ସେ ପଦାର୍ଥବିଜ୍ଞାନକୁ ଖୁବ୍ ଭଲପାଇ ବସିଥିଲେ । ଦକ୍ଷିଣରେ ମାନ୍ଦ୍ରାଜର ପ୍ରେସିଡେନ୍‌ସି କଲେଜ ଖୁବ୍ ନାଁ କରିଥିଲା । ତାମିଲନାଡୁ, ଆନ୍ଧ୍ର, କେରଳ ଓ କର୍ଣ୍ଣାଟକର ଅଧିକାଂଶ ମେଧାବୀ ଛାତ୍ର ଏହି କଲେଜରେ ପଢ଼ିବାକୁ ମନ ବଳାଉଥିଲେ । ଏ କଲେଜର ପ୍ରାୟ ସମସ୍ତ ପ୍ରଫେସର ଇଉରୋପରୁ ଆସିଥିଲେ । ରାମନ ଯଦିଓ ଖୁବ୍ ସାନ ଓ ଦୁର୍ବଳିଆ ଦିଶୁଥିଲେ ତଥାପି ଏହି ଅଧ୍ୟାପକମାନେ ତାଙ୍କୁ ଅତି ଆଦର କରୁଥିଲେ ।

ରାମନ ୧୯୦୪ରେ ବି.ଏ.ରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ । ଇଂରାଜୀ ଓ ପଦାର୍ଥବିଜ୍ଞାନରେ ଖୁବ୍ ଭଲ କରି ତିନୋଟି ସ୍ୱର୍ଣ୍ଣ ପଦକ ପାଇଲେ । କେତେକ ଅଧ୍ୟାପକ ତାଙ୍କୁ ସୁପାରିସ ପତ୍ର ଦେଇ ଲେଖିଲେ – ଗତ ୩୦ ବର୍ଷରେ ସେମାନେ ଏଭଳି ଛାତ୍ର ପାଇ ନ ଥିଲେ । ସେ ଯେମିତି ବୁଦ୍ଧିଆ ସେମିତି ଚାଲାକ । ସବୁବେଳେ ପ୍ରସ୍ତୁତ, ଯାହା ପଚାରିଲେ କହିବେ । ଇଂରାଜୀ ସାହିତ୍ୟରେ ଜ୍ଞାନ ଯେମିତି ଗଭୀର ଭାବପ୍ରକାଶ ସେମିତି ପ୍ରଶସ୍ତ । ସେ ବହିକୀଟ ନଥିଲେ ଯେ ଯାହା ପଢ଼ିଥିଲେ ତାହା ଅବିକଳ ଲେଖୁଥିଲେ ବା ଗାଉଥିଲେ । ସେ ଥିଲେ ଜଣେ ପ୍ରତିଭାବାନ ସ୍ୱାଧୀନଚେତା ଓ ଚରିତ୍ରବାନ ଯୁବକ ।

## ବିଲାତ ଯିବା ନୋହିଲା

ଏଭଳି ଜଣେ ବି.ଏ. ଡିଗ୍ରୀଧାରି ଯୁବକ ଆଉ ଅଧିକ ପାଠପଢ଼ାପାଇଁ ଯିବେ କୁଆଡେ ? ତାଙ୍କୁ ଶିକ୍ଷକମାନେ କହିଲେ – ସେ ଉଚ୍ଚ ଶିକ୍ଷାପାଇଁ ଇଂଲଣ୍ଡ ଯାଆନ୍ତୁ । ପରିବାର ଲୋକେ ଓ ବନ୍ଧୁବାନ୍ଧବ ମଧ୍ୟ ସେଇଆ କହିଲେ । କିନ୍ତୁ ଏମାନଙ୍କ ଇଚ୍ଛାରେ କ'ଣ ବିଲାତ ଯାଇ ହେବ ? ମାନ୍ଦ୍ରାଜର ସିଭିଲ୍ ସର୍ଜନଙ୍କୁ ପଚରାହେଲା । ସେ ସିଧା ମନା କରିଦେଲେ । ତାଙ୍କ ମତରେ ରାମନଙ୍କ ପରି ଦୁର୍ବଳ ଯୁବକ ବିଲାତର ଥଣ୍ଡା ଜଳବାୟୁରେ ଚଳି ପାରିବେ ନାହିଁ । ସମସ୍ତଙ୍କ ମନ ଫିକା ପଡିଗଲା । ରାମନ ସେତେବେଳେ ନିଶ୍ଚୟ ବ୍ୟସ୍ତ ହୋଇଥିବେ । ପରେ କିନ୍ତୁ ସେ ଲେଖିଛନ୍ତି "ମୋର କୃତିତ୍ୱ ପାଇଁ ସିଭିଲସର୍ଜନଙ୍କ ପାଖେ ମୁଁ ସବୁଦିନେ କୃତଜ୍ଞ ହୋଇ ରହିବି ।" ତାଙ୍କୁ ୩୩ ବର୍ଷ ବୟସ ହେବା ପର୍ଯ୍ୟନ୍ତ ସେ ବିଲାତ ଯାଇ ନ ଥିଲେ ।

ସିଭିଲସର୍ଜନ ବିଲାତ ଯିବାକୁ ସୁପାରିଶ କଲେ ନାହିଁ; ରାମନଙ୍କ ବିଲାତ ଶିକ୍ଷା

ହୋଇପାରିଲା ନାହିଁ । ଏଥିପାଇଁ ରାମନ ତାଙ୍କୁ କୃତଜ୍ଞତା ଜଣାଇଲେ । କାରଣ ବିଲାତ ଯାଇଥିଲେ ରାମନ ଅନ୍ୟମାନଙ୍କ ପରି ଗବେଷଣା କରିଥାନ୍ତେ । ଚଲାବାଟରେ ଚାଲିଥାନ୍ତେ । ବିଶେଷ ମୁଣ୍ଡ ଖେଳାଇ ନ ଥାନ୍ତେ । ହୁଏତ ଜୀବନ ସାରା ଅନ୍ୟର ଗୋଡାଣିଆ ହୋଇ ରହି ଯାଇଥାନ୍ତେ । କେଉଁଠି କିଛି ଗବେଷଣା କରିବାକୁ କେବଳ ବିଲାତ ପରିବେଶ ଖୋଜିଥାନ୍ତେ । ଭାରତରେ ଅଭାବ, ଅସୁବିଧା ଓ ପ୍ରତିବନ୍ଧକ ଭିତରେ ତାଙ୍କ ବିଲାତ ଶିକ୍ଷା ତାଙ୍କୁ ବେଶୀବାଟ ଆଗେଇ ଦେଇ ନ ଥାନ୍ତା । ହୁଏତ ଗବେଷଣା କରି ସେ ନାନା ପ୍ରକାର ସିଦ୍ଧାନ୍ତ ପାଇଥାନ୍ତେ । କିନ୍ତୁ 'ରାମନ ସିଦ୍ଧାନ୍ତ' ପାଖରେ ପହଞ୍ଚି ନଥାନ୍ତେ ।

## ଏମ୍.ଏ.ରେ ନାଁ ଲେଖା

ରାମନ ଏମ୍.ଏ. ପଢ଼ିବାପାଇଁ ସେହି ପ୍ରେସିଡେନ୍‌ସି କଲେଜରେ ନାଁ ଲେଖାଇଲେ, ପଦାର୍ଥ ବିଜ୍ଞାନ ପଢ଼ିବେ । ମୁଖ୍ୟ ଅଧ୍ୟାପକ ଥାନ୍ତି ଆର୍.ଏଲ୍. ଜୋନ୍‌ସ । ସେ ଅତି ଭଦ୍ର ଓ ଉଦାର । ବି.ଏ. ପଢ଼ିଲାବେଳେ ରାମନ ତାଙ୍କୁ ଜାଣିଥିଲେ । ରାମନ ତ ବହି ପଢ଼ି ସବୁ ବୁଝି ଯାଉଥିଲେ । ଅଧ୍ୟାପକମାନେ ଶ୍ରେଣୀଗୃହରେ ବହିଲେଖା ପାଠ ଦୋହରାଉଥିଲେ । ତେଣୁ ଶ୍ରେଣୀରେ ରାମନଙ୍କ ମନ ବିଶେଷ ଲାଗୁ ନ ଥିଲା । ଜୋନ୍‌ସଙ୍କ ପରି ଉଦାର ଅଧ୍ୟାପକ ତାହା ବେଶ୍ ବୁଝି ପାରୁଥିଲେ । ସେଥିପାଇଁ ରାମନଙ୍କୁ ଶ୍ରେଣୀରେ ବସି ବକ୍ତୃତା ଶୁଣିବାକୁ ସେ ବାଧ କରୁନଥିଲେ । ରାମନ ନିଜେ ଲେଖିଛନ୍ତି ଯେ ଦୁଇବର୍ଷ ଏମ୍.ଏ. ପଢ଼ା ମଧ୍ୟରେ ଦିନେ ସେ ଗୋଟିଏ ବକ୍ତୃତା ଶୁଣିବାକୁ ଶ୍ରେଣୀଗୃହକୁ ଯାଇଥିଲେ । ନିଜେ ମୁଖ୍ୟ ଅଧ୍ୟାପକ ଜୋନ୍‌ସ ସେହି ବକ୍ତୃତା ଦେଉଥିଲେ । ଫେବ୍ରିପେରୋ ଇଣ୍ଟରଫେରୋ ମିଟର (ଏକ ଆଲୋକ ଉପକରଣ) ଯନ୍ତ୍ର ଉପରେ ଜୋନ୍‌ସ ବକ୍ତୃତା ଦେଉଥିଲେ । ଆଲୋକ ବିଜ୍ଞାନକୁ ସେ ଖୁବ୍ ଭଲ ପାଉଥିଲେ । ତାହାର ଏକ ଉପକରଣ ବିଷୟରେ ନିଜେ ମୁଖ୍ୟ ଅଧ୍ୟାପକ ବକ୍ତୃତା ଦେଲେ, ସେ ନଯାଇଥାନ୍ତେ କିପରି ?

ଜୋନ୍‌ସଙ୍କର ପଦାର୍ଥବିଜ୍ଞାନରେ ଖୁବ୍ ଖ୍ୟାତି ଥିଲା । ହେଲେ ବି ରାମନ ତାଙ୍କ ଦ୍ୱାରା ବିଶେଷ ଉପକୃତ ହୋଇ ନ ଥିଲେ । ରାମନ ଯେତେବେଳେ ପୃଥିବୀବିଖ୍ୟାତ ହୋଇ ଉଠିଲେ, ତାଙ୍କ ବିଷୟରେ ସେତେବେଳେ ସବୁ ଟିକିନିଖି ଖବର ବାହାରୁଥିଲା । ତାଙ୍କୁ ୫୦ ବର୍ଷ ହୋଇଥାଏ । ତାଙ୍କ ଜନ୍ମଦିନ ପାଳନ ପାଇଁ ଯୋଗାଡ଼ ହେଲା ।

ଇଣ୍ଡିଆନ ଏକାଡେମି ଅଫ୍ ସାଇନ୍‌ସ ଭାରତର ଏକ ପ୍ରସିଦ୍ଧ ବିଜ୍ଞାନ ଅନୁଷ୍ଠାନ । ଏହାର ମୁଖ୍ୟ ପ୍ରତିଷ୍ଠାତା ରାମନ ନିଜେ । ଏହି ଅନୁଷ୍ଠାନରୁ ଯେଉଁ ପତ୍ରିକା ବାହାରୁଥିଲା ତାହାର ଏକ ବିଶେଷ ସଂଖ୍ୟା ଛପା ହେଲା । ରାମନଙ୍କ ଗବେଷଣା ବିଷୟରେ

ଅନେକ କଥା ସେଥିରେ ବାହାରି ଥାଏ । ସେହି ଲେଖାଗୁଡ଼ିକ ଉପରେ ମତାମତ ଦେବାକୁ 'ନେଚର' ପତ୍ରିକାର ସମ୍ପାଦକଙ୍କୁ ଅନୁରୋଧ କରାଗଲା । ଲଣ୍ଡନରେ ଛପା ହେଉଥିବା 'ନେଚର' ପତ୍ରିକାର ବହୁତ ଖ୍ୟାତି । ଆଗେ ନୂଆ ନୂଆ ଆବିଷ୍କାର କଥା ଏଇଥିରେ ଛପା ହେଉଥିଲା । ତାହାର ସମ୍ପାଦକ ଲେଖିଲେ "ରାମନଙ୍କ ସମ୍ବନ୍ଧରେ ବିଶେଷ ସଂଖ୍ୟା ଛପା ହେଲା, ସେଥିରେ ପଦିଏ ହେଲେ ଜୋନ୍‌ସଙ୍କ କଥା ନାହିଁ । ଯାହା ହେଲେ ବି ଜୋନ୍‌ସ ହେଉଛନ୍ତି ତାଙ୍କ ଶିକ୍ଷକ । ତାଙ୍କଠାରୁ ଏ ବିଖ୍ୟାତ ଛାତ୍ର କ'ଣ କିଛି ଶିଖି ନ ଥିଲେ ?"

କ'ଣ ଶିଖିଥିଲେ, ନ ଶିଖିଥିଲେ ସେ ପ୍ରଶ୍ନ ନାହିଁ । ଶ୍ରେଣୀରେ ଯାହା ପଢା ହେଉଥିଲା ତା ଠାରୁ ଖୁବ୍ ବେଶୀ ରାମନ ନିଜେ ପଢ଼ି, ଜାଣିଥିଲେ । ତେଣୁ ଅଧ୍ୟାପକ ଜୋନ୍‌ସଙ୍କ କଥା କେହି କିଛି ଲେଖି ନ ଥିଲେ । ୨ ବର୍ଷରେ ଥରେ ଯିଏ ଶ୍ରେଣୀକୁ ଯାଇଥିଲେ ସେ ଶିକ୍ଷକଙ୍କଠାରୁ କ'ଣ ବା ଶିଖିଥିବେ ? କିନ୍ତୁ ଯେଉଁ ଅଧ୍ୟାପକ ଜୋନ୍‌ସ, ରାମନଙ୍କୁ ଏଭଳି ସୁଯୋଗ ଦେଇଥିଲେ ତାଙ୍କୁ ପ୍ରଶଂସା କରିବା କଥା । ସେ ନିଶ୍ଚୟ ରାମନଙ୍କ ପ୍ରତିଭା ଠଉରେଇଥିଲେ । ନ ହେଲେ ସେ ଏଭଳି ସୁବିଧା ଦେଇ ନ ଥାନ୍ତେ, କି କୌଣସି ସାଧାରଣ ଛାତ୍ର ଏ ସୁବିଧା ପାଇଥିଲେ ବି ନେଇ ନ ଥାନ୍ତା ।

ରାମନ ୧୮୮୮ ମସିହା ନଭେମ୍ବର ୭ ତାରିଖରେ ଜନ୍ମ ହୋଇଥିଲେ । ୮୨ ବର୍ଷ ବଞ୍ଚିଥିଲେ । ୧୯୭୦ ନଭେମ୍ବର ୨୧ରେ ତାଙ୍କର ମୃତ୍ୟୁ ହେଲା । ଖୁବ୍ ଛୋଟବେଳୁ ସେ ପଢ଼ାପଢ଼ି ଆରମ୍ଭ କରି ଦେଇଥିଲେ । ୧୮୯୨ ମସିହା, ତାଙ୍କୁ ମାତ୍ର ୪ ବର୍ଷ, ସେ ବାପାଙ୍କ ସଙ୍ଗେ ଆନ୍ଧ୍ର ପ୍ରଦେଶର ବିଶାଖାପାଟ୍‌ନାମ୍ ଆସିଥିଲେ । ସେଠି ତାଙ୍କ ବାପା ପଦାର୍ଥ ବିଜ୍ଞାନ ଓ ଗଣିତର ଅଧ୍ୟାପକ (ଲେକଚରର) ହୋଇ ରହିଲେ । ସେ ୧୦ ବର୍ଷ କାଳ ପଢ଼ାପଢ଼ି କଲେ । ମାଟ୍ରିକ୍ ପାସ କଲା ପରେ କଲେଜରେ ୨ ବର୍ଷ ପଢ଼ିଲେ ।

୧୯୦୩ ଜାନୁୟାରୀରେ ସେ ବୃତ୍ତି ପାଇ ମାଡ୍ରାଜ ଗଲେ । ମାଡ୍ରାଜର ପ୍ରେସିଡେନ୍‌ସି କଲେଜରୁ ୧୯୦୪ରେ ବି.ଏ. ପାସ କଲେ । ସେତେବେଳକୁ ବୟସ ୧୫ ବର୍ଷ । ବିଶ୍ୱବିଦ୍ୟାଳୟରେ ପ୍ରଥମ । ଇଂରାଜୀ ଓ ପଦାର୍ଥବିଜ୍ଞାନରେ ସ୍ୱର୍ଣ୍ଣପଦକମାନ ହାସଲ କଲେ । ଏହି ଭଳି ଜଣେ ପ୍ରତିଭାବାନ୍ ଛାତ୍ରଙ୍କୁ ଅଧ୍ୟାପକ ଜୋନ୍‌ସ ଶ୍ରେଣୀରେ ବସିବାକୁ ବାଧ୍ୟକରନ୍ତେ କାହିଁକି ? ଜୋନ୍‌ସଙ୍କଠାରୁ ସେଇ ପ୍ରକାର ସୁବିଧା ନେଇ ସେ ଏମ୍.ଏ. ପଢ଼ା ବି ଆରମ୍ଭ କଲେ । ୧୯୦୭ରେ ୧୮ ବର୍ଷ ବୟସରେ ଏମ୍.ଏ. ପଢ଼ା ସରିଲା । ଏଥରକ ମଧ୍ୟ ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇ ନମ୍ବର ରଖି ଯେଉଁ ରେକର୍ଡ କଲେ ଆଗରୁ କେହି ସେପରି କରି ନଥିଲେ ।

# ପରିଚ୍ଛେଦ-୨

## କି ଚାକିରି କରିବେ

ଭଲରେ ଭଲରେ ପାଠପଢ଼ା ସରିଲା, ଏଣିକି ଚାକିରି କରିବା କଥା ? କି ଚାକିରି କରିବେ ? ଭଲ ପାଠପଢ଼ୁଆ ପିଲାମାନେ ସେତେବେଳେ ଅଧ୍ୟାପକ ବା ଶିକ୍ଷକ ହେବାକୁ ପସନ୍ଦ କରୁଥିଲେ । ରାମନ ଜଣେ ଅଧ୍ୟାପକ ହେବା କଥା । କିନ୍ତୁ ବନ୍ଧୁବାନ୍ଧବ କଥାଟିକୁ ପସନ୍ଦ କଲେ ନାହିଁ । କହିଲେ ତାଙ୍କ ପରି ଜଣେ ଅସାଧାରଣ ଛାତ୍ର ସାଧାରଣ ଚାକିରିରେ ମାତିବା ଉଚିତ ନୁହେଁ । ଗବେଷଣା କରିବାପାଇଁ ସେ ଜଣେ ଯୋଗ୍ୟ ବ୍ୟକ୍ତି । ପରାଧୀନ ଦେଶରେ ଗବେଷଣା ପାଇଁ ବ୍ୟବସ୍ଥା କାହିଁ ? ତେଣୁ ଛାତ୍ର ଜୀବନରେ ପାଠ ପଢୁଥିବାବେଳେ ଯିଏ ଗବେଷଣା ପତ୍ର ଛପାଇଥିଲେ ସିଏ ଏବେ ଗବେଷଣାଠାରୁ ଦୂରେଇ ଯିବା କଥା ଉଠିଲା । ବନ୍ଧୁବାନ୍ଧବଙ୍କ କଥା ରହିଲା । ସ୍ଥିର ହେଲା – ରାମନ ପ୍ରଶାସନ କ୍ଷେତ୍ରରେ ଚାକିରି କରିବେ ।

ପ୍ରଶାସନ ଚାକିରି ପାଇଁ ପ୍ରତିଯୋଗିତା ପରୀକ୍ଷା । ଲଣ୍ଡନ ଯାଇ ପରୀକ୍ଷା ଦେବାକୁ ହେବ । ଏଥିପାଇଁ ତାଙ୍କ ସ୍ୱାସ୍ଥ୍ୟ ପ୍ରତିବନ୍ଧକ । ତାହେଲେ ହେବ କ'ଣ ? କଲିକତାରେ ଆଉ ଗୋଟିଏ ସର୍ବଭାରତୀୟ ପରୀକ୍ଷା ହେଉଛି । ଅର୍ଥ ବିଭାଗର ବଡ ବଡ ଚାକିରି ପାଇଁ ଏ ପରୀକ୍ଷା ହେଉଥିଲା । ୧୯୦୭ ମସିହା ଫେବୃୟାରୀରେ ଏ ପରୀକ୍ଷା କଲିକତାରେ ହେଉଥାଏ । ବନ୍ଧୁବାନ୍ଧବଙ୍କ କଥାରେ ଆପତ୍ତି ନ କରି ରାମନ ସେ ପରୀକ୍ଷାରେ ବସିଲେ । ପରୀକ୍ଷାରେ ସେ କୃତକାର୍ଯ୍ୟ ହୋଇ ସାକ୍ଷାତ୍କାର ଦେଲେ । ଏ ପ୍ରତିଯୋଗିତାରେ ସମସ୍ତଙ୍କୁ ଟପି ସେ ପ୍ରଥମ ହେଲେ ।

ସହକାରୀ ଏକାଉଣ୍ଟାଣ୍ଟ ଜେନେରାଲ ଭାବେ ନିଯୁକ୍ତି ପତ୍ର ମିଳିଲା । ଚାକିରିଟି ସମ୍ମାନଜନକ ସତ, କିନ୍ତୁ ପଦାର୍ଥବିଜ୍ଞାନର ଏହା ସହିତ ସମ୍ପର୍କ ନ ଥିଲା । ତାଙ୍କ ପ୍ରିୟ ପଦାର୍ଥବିଜ୍ଞାନ ଛାଡି ସେ ଏ ଚାକିରିରେ ଯୋଗ ଦେବାକୁ ମଙ୍ଗିଲେ ନାହିଁ । ବାପା ମା' ବନ୍ଧୁବାନ୍ଧବ ମୁଣ୍ଡରେ ହାତ ଦେଇ ବସିଲେ, କହିଲେ – ଏ ପିଲାର ମୁଣ୍ଡ ବିଗିଡି ଗଲା ନାଁ କ'ଣ ? ଏଭଳି ଚାକିରି କିଏ ଛାଡେ ? ମହାମହିମ

ସମ୍ରାଟଙ୍କ ଅଧୀନରେ ଚାକିରି । ଏଥିରେ ଉଚ୍ଚ ବେତନ, ପଦୋନ୍ନତି, ମାନ ସମ୍ମାନ, କ'ଣ ନାହିଁ ? ସମସ୍ତଙ୍କ ଚାପରେ ରାମନ ଚାକିରିରେ ପଶିଲେ ।

୧୯୦୭ର ଜୁନ ମାସ । ରାମନଙ୍କୁ ବୟସ ୧୮ ବର୍ଷ ୭ ମାସ । ଚାକିରି କରିବାର ଉପଯୁକ୍ତ ବୟସ ହୋଇ ନ ଥାଏ । ତଥାପି ସେ ଠିକ୍ ସମୟରେ ଅଫିସ୍‌କୁ ଯାଉଥିଲେ ଓ ଫେରୁଥିଲେ । ଶୃଙ୍ଖଳା, ନିୟମ ଓ କର୍ତ୍ତବ୍ୟରେ ଟିକିଏ ବି ଅବହେଳା କରୁ ନ ଥିଲେ । ଜଣେ ପୋଖତ ଅଫିସରଙ୍କ ପରି ସେ ଫାଇଲରେ ଲେଖାଲେଖି କରି ମତାମତ ଦେଉଥିଲେ । ଅଫିସରେ ତାଙ୍କ କାର୍ଯ୍ୟ ଦେଖିଲେ ଯେ କେହି ଧାରଣା କରିବ ଯେ ଅଫିସ କାର୍ଯ୍ୟ ତାଙ୍କର ସବୁକିଛି, ଅନ୍ୟ କୌଣସି କାର୍ଯ୍ୟରେ ତାଙ୍କର ଆଗ୍ରହ ନାହିଁ । କିନ୍ତୁ ପ୍ରକୃତରେ ତାଙ୍କ ମନ ବିଜ୍ଞାନଗବେଷଣା ପାଇଁ ଛଟପଟ ହେଉଥିଲା ।

## ଗବେଷଣା ସୁଯୋଗ

ଆମ ଭାଗବତରେ ଲେଖା ଅଛି "ଏ ମନ ଖୋଜୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା ।" ଲୋକେ କହନ୍ତି "ଇଚ୍ଛା ଥିଲେ ଉପାୟ ବଳେ ବଳେ ଆସେ ।" ରାମନଙ୍କର ତ ଗବେଷଣା କରିବାକୁ ଭାରୀ ଇଚ୍ଛା ଥାଏ । କିନ୍ତୁ ଉପାୟ କ'ଣ ? ସେ ଯେଉଁ ଚାକିରି କଲେ ତା'ର ଗବେଷଣା ସହିତ ସମ୍ପର୍କ ନାହିଁ । ୧୦ଟାରୁ ୫ଟା ଯାଏ କେବଳ ଫାଇଲପତ୍ର ଦେଖିବା କାମ । ଫାଇଲ ଦେଖି ମତାମତ ଦେଉ ଦେଉ ବେଳ ଅଣ୍ଟେନା । ପ୍ରତିଦିନ କୁଢ଼ କୁଢ଼ ଫାଇଲ, ଗବେଷଣା କଥା ଚିନ୍ତା କରିବେ କେତେବେଳେ ? କିନ୍ତୁ ମନେ ମନେ ସେ ଧନ୍ଦି ହେଉଥାନ୍ତି, ଉପାୟ ଅଣ୍ଡାଳୁ ଥାନ୍ତି ।

ଦିନେ ସକାଳେ ସେ ଅଫିସକୁ ଯାଉଥାନ୍ତି । ଗୋଟିଏ ସାଇନ୍‌ବୋର୍ଡ ଉପରେ ତାଙ୍କର ନଜର ପଡ଼ିଲା । ସେଥିରେ ଲେଖାଥିଲା "ଇଣ୍ଡିଆନ ଆସୋସିଏସନ ଫର କଲ୍‌ଟିଭେସନ ଅଫ ସାଇନ୍‌ସ ।" ବିଜ୍ଞାନ ଆଲୋଚନା ଓ ପରୀକ୍ଷା ପାଇଁ ଏ ସଂଘ ଗଢ଼ା ହୋଇଥିଲା । ବଉବଜାର ଷ୍ଟ୍ରିଟ୍‌ର ୨୧୦ ନମ୍ବର ଘରେ ଏଇ ସାଇନ୍‌ବୋର୍ଡ ଟଙ୍ଗା ହୋଇଥିଲା । ସେଇଦିନ ଟ୍ରାମରେ ଅଫିସରୁ ଫେରିଲା ବାଟରେ ସେ ସେଠାରେ ଓହ୍ଲାଇଲେ । ସେଠି କ'ଣ ହେଉଛି ଜାଣିବାକୁ ତାଙ୍କର ମନ ବଳିଲା । ସେତେବେଳକୁ ସନ୍ଧ୍ୟା ହୋଇ ଆସୁଥାଏ । ସେଠା ଅଫିସର ଆଶୁତୋଷ ଦେ ତାଲା ପକାଇ ସେଇ ଘର ବନ୍ଦ କରୁଥାନ୍ତି । ଏଇ ଆଶୁତୋଷ ଦେ ପରେ ସେଠି ଆଶୁବାବୁ ବୋଲି ବିଖ୍ୟାତ ହେଲେ । ଦୀର୍ଘ ୨୫ ବର୍ଷ କାଳ ସେ ରାମନଙ୍କ ସହଯୋଗୀ ହୋଇ ରହିଲେ, ଖାଲି ସହଯୋଗୀ ନୁହେଁ ଗବେଷଣାର ସାଥୀ । ବେଳ ଅବେଳ

ବିଚାର ନ କରି, ଆପତ୍ତି ନ କରି ସେ ରାମନଙ୍କ ସଙ୍ଗେ ଛାଇ ପରି ରହିଥିଲେ । ରାମନଙ୍କର ଯେତେ ଛାତ୍ର ଆସିଥିଲେ ସମସ୍ତଙ୍କୁ ଆଶୁବାବୁ ଏକ ପ୍ରକାର ସ୍ନେହରେ ଶାସନ କରୁଥିଲେ ।



ଆଶୁତୋଷ ଦେ (ଆଶୁବାବୁ)

ସେହି ମହାନ ବ୍ୟକ୍ତି ଆଶୁବାବୁଙ୍କ ସହିତ ଯୁବକ ଅଫିସର ରାମନଙ୍କ ସାକ୍ଷାତ । ଆଶୁବାବୁ ଗପି ଚାଲିଲେ ଅନୁଷ୍ଠାନର ଇତିହାସ । ମହେନ୍ଦ୍ରଲାଲ ସରକାର ୧୮୭୬ରେ ଏହି ଅନୁଷ୍ଠାନ ପ୍ରତିଷ୍ଠା କଲେ । ସେ ଜଣେ ଡାକ୍ତର ଥିଲେ । ତାଙ୍କର ଏକାନ୍ତ ଇଚ୍ଛା ଥିଲା ଏ ଦେଶରେ ବିଜ୍ଞାନ ପ୍ରସାର କରୁ । ଲୋକେ ବିଜ୍ଞାନ ନ ଜାଣିଲେ ଦେଶର ଉନ୍ନତି ହେବ ନାହିଁ ।

ବିଜ୍ଞାନକୁ ଆଦରଣୀୟ କରିବା ପାଇଁ ଅନୁଷ୍ଠାନରେ ନାନା ଆଲୋଚନା ହେଉଥିଲା । ସେଠାରେ ବିଜ୍ଞାନ ପରୀକ୍ଷା କରିବାର ମଧ୍ୟ ସେ ବନ୍ଦୋବସ୍ତ କରିଥିଲେ । ଏଥିପାଇଁ ପୁରୁଣା ଉପକରଣମାନ ସଂଗ୍ରହ କରାଇ ରଖିଥିଲେ । ଖାଲି ଉପକରଣ ରଖିଦେଲେ କି ସଂଘ ଗଢ଼ିଦେଲେ ସବୁକିଛି ହୋଇ ଯାଏନା । ସମିତିକୁ ସକ୍ରିୟ କରିବାପାଇଁ ଉତ୍ସାହୀ ଯୁବକ ସଭ୍ୟଥିବା ଦରକାର । ବୋଧହୁଏ ସେପରି ସଭ୍ୟ ନ ଥିଲେ । ଥିଲେ ଅନୁଷ୍ଠାନଟି ସେପରି ଅବହେଳିତ ହୋଇ ନଥାନ୍ତା । ମହେନ୍ଦ୍ରଲାଲଙ୍କ ବଞ୍ଚିଥିବା

ବେଳେ ଅନୁଷ୍ଠାନଟି ବିଶେଷ କଛି ଉନ୍ନତି କରି ନଥିଲା, କେବଳ ଘୁକୁଘୁକୁ ହୋଇ ଯାହା ବଞ୍ଚିଥିଲା । ତେଣୁ ମହେନ୍ଦ୍ରଲାଲ ମରିବା ପୂର୍ବରୁ କହିଥିଲେ ''ଯୁବକମାନେ ମୋ ଅନ୍ତେ ଏଠି ଆସି ଲାଗିପଡିଲେ ଏହା ଏକ ବିରାଟ ଅନୁଷ୍ଠାନ ହୋଇ ମୁଣ୍ଡ ଟେକିବ ।''



ମହେନ୍ଦ୍ରଲାଲ ସରକାର, ଇଣ୍ଡିଆନ୍ ଆସୋସିଏସନ୍
ଫର୍ କଲ୍‌ଟିଭେସନ ଅଫ୍ ସାଇନ୍‌ସ୍‌ର ପ୍ରତିଷ୍ଠାତା

ମହେନ୍ଦ୍ରଲାଲଙ୍କ ପୁତୁରା ଅମୃତଲାଲ ସେହି ସଂଘର ସମ୍ପାଦକ ହେଲେ । ଆଶୁବାବୁଙ୍କଠାରୁ ଏ ସବୁ ଶୁଣି ରାମନ ଅମୃତବାବୁଙ୍କୁ ସାକ୍ଷାତ କଲେ । ରାମନ୍‌ଙ୍କ ପରିଚୟ ପାଇ ଅମୃତଲାଲ ଉତ୍‌ଫୁଲ୍ଲ ହୋଇ ଉଠିଲେ । ସେ ଆନନ୍ଦରେ ଗଦ୍‌ଗଦ୍ ହୋଇ ରାମନଙ୍କୁ କୁଣ୍ଢେଇ ପକାଇଲେ । ଅମୃତଲାଲ ଅନୁଭବ କଲେ ତାଙ୍କ କକା

ଅନୁଷ୍ଠାନର ଉନ୍ନତି ପାଇଁ ଯେଉଁ ଯୁବକଙ୍କର ସ୍ୱପ୍ନ ଦେଖୁଥିଲେ ସେ ଆପେ ଆସି ତାଙ୍କ ଆଗରେ ଠିଆ ହୋଇଛନ୍ତି । ସଙ୍ଗେ ସଙ୍ଗେ ସେ ପରୀକ୍ଷାଗାରର ଚାବି ରାମନଙ୍କୁ ଧରାଇ ଦେଲେ । କହିଲେ "ଆପଣ ଯେତେବେଳେ ଚାହିଁବେ ସେତେବେଳେ ଏ ପରୀକ୍ଷାଗାର ଖୋଲି ପରୀକ୍ଷା କରିବେ । ଏଣିକି ଏହାର ଦାୟିତ୍ୱ ଆପଣଙ୍କର ।" ରାମନ କାଳ ବିଳମ୍ବ ନକରି ଏ ସୁଯୋଗ ଆଦରି ନେଲେ । ତାଙ୍କ ସହିତ ସହଯୋଗ କଲେ ଆଶୁବାବୁ ।

୧୦ ଟାରୁ ୫ଟା ରାମନ ଅଫିସ ଯାଆନ୍ତି । ଅଫିସ ସମୟ ବାହାରେ ସେ ଅନୁଷ୍ଠାନର ପରୀକ୍ଷାଗାରରେ ବ୍ୟସ୍ତ ରହନ୍ତି । ପରୀକ୍ଷା କରୁ କରୁ ରାତି ବହୁତ ହୋଇଯାଏ । ଦିନେ ଦିନେ ରାମନ ଘରକୁ ଫେରି ନ ପାରି ସେଇଠି ଶୋଇ ପଡନ୍ତି । ଏତେ ରାତିଯାଏ ବୋଧହୁଏ ପୃଥିବୀର କୌଣସି ଅନୁଷ୍ଠାନ ଖୋଲା ରହୁ ନଥିବ । ଗବେଷଣାରେ ପୂରାପୂରି ମଜ୍ଜିଗଲା ପରି ଲୋକ ନହେଲେ ଏଠାକୁ କେହି ଆସୁ ନ ଥିଲେ । ନହେଲେ ବେଳ ଅବେଳ ନ ବିଚାରି ଏଠି ଏତେ ଖଟିବ କିଏ ? ମହେନ୍ଦ୍ରଲାଲ ମୃତ୍ୟୁଶଯ୍ୟାରେ ଶେଷ ମୁହୂର୍ତ୍ତରେ ଯେଉଁ ସ୍ୱପ୍ନ ଦେଖୁଥିଲେ ତାହା ରାମନଙ୍କଦ୍ୱାରା ବାସ୍ତବ ରୂପ ନେଲା । ଏହିଭଳି କେତେ ଜଣ ବ୍ୟକ୍ତି ଗୋଟିଏ ଗୋଟିଏ ଅନୁଷ୍ଠାନ ଗଢ଼ିଦିଅନ୍ତି । ସବୁ ଅନୁଷ୍ଠାନ ଭାଗ୍ୟରେ ଏପରି ସୁଯୋଗ ଆସେ ନାହିଁ । କ୍ୱଚିତ୍ କଦବା ଏପରି ସୁଯୋଗ ଆସିଥାଏ ।

ମହେନ୍ଦ୍ରଲାଲଙ୍କ ଅନୁଷ୍ଠାନ ଏକ ମହାନ୍ ଅନୁଷ୍ଠାନରେ ପରିଣତ ହେଲା କିନ୍ତୁ ଏଥିପାଇଁ ରାମନ ବହୁତ କିଛି ପରିଶ୍ରମ କରିଥିଲେ । ତାକୁ ପରିଶ୍ରମ ନ କହି ସଂଘର୍ଷ କହିଲେ ଅଧିକ ଠିକ୍ ହେବ । କାରଣ ଗବେଷଣାରେ କେବଳ ପରିଶ୍ରମ କରିଦେଲେ ସବୁ କିଛି ହୁଏ ନାହିଁ । ମୁଣ୍ଡ ଖେଳାଇବାକୁ ପଡେ, କ'ଣ କରିବାକୁ ହେବ ଓ କିପରି କରିବାକୁ, କି ଉପକରଣ ଦରକାର, ପାଖରେ ଥିବା ଉପକରଣରେ କ'ଣ ଅଦଳବଦଳ କରିବାକୁ ହେବ ସବୁ କଥାର ଏପଟ ସେପଟ ତନଖିବାକୁ ପଡେ । ରାମନ ଏସବୁ କରିବାରେ ଧୁରନ୍ଧର ଥିଲେ ।

ପ୍ରଥମେ ରାମନ ଦେଖିନେଲେ ସେଠାରେ ଯେଉଁ ଉପକରଣ ସବୁ ଅଛି ସେଗୁଡିକ ପୁରୁଣା, ସେଥିରେ ଆଲୋକ ଉପରେ କେତେକ ପରୀକ୍ଷା କରାଯାଇ ପାରେ । ତେଣୁ ଯେଉଁ ବଙ୍ଗାଳୀ ଯୁବକମାନେ ପ୍ରଥମେ ଆସି ଜୁଟିଲେ ସେମାନଙ୍କୁ ଲଗାଇ ଜଣାଶୁଣା କେତେକ ପରୀକ୍ଷା ଆରମ୍ଭ କରିଦେଲେ । ଗବେଷଣା କରିବା ପୂର୍ବରୁ ପ୍ରଥମେ ମନକୁ ସ୍ଥିର ଓ ଏକାଗ୍ର କରିବାକୁ ପଡିବ, ପରିଶ୍ରମ କରିବା ପାଇଁ ଅଭ୍ୟାସ କରିବାକୁ ହେବ । ଏସବୁ ପରୀକ୍ଷା କରି ସେମାନେ ଗବେଷଣା ପାଇଁ ପ୍ରସ୍ତୁତ ହେଉଥିଲେ ।

ବି.ଏସ୍‌ସି. ଓ ଏମ୍.ଏସ୍‌ସି. ପଢ଼ିଲା ବେଳେ ସେ ଆଲୋକବିଜ୍ଞାନରେ କେତେକ ପରୀକ୍ଷା କରିଥିଲେ । ସେଗୁଡ଼ିକର ଫଳାଫଳ ସେ ଗବେଷଣା ପତ୍ରରୂପେ ଲଣ୍ଡନରେ ଛପାଇଥିଲେ । ପ୍ରଥମରୁ କେବଳ ସେଇ ପରୀକ୍ଷାଗୁଡ଼ିକ ସେ କରି ପାରିଥାନ୍ତେ । କିନ୍ତୁ ତାହା ନକରି ସେ କେତେକ ନୂଆ ପରୀକ୍ଷା କରିବାକୁ ସ୍ଥିର କଲେ । ହଠାତ୍ ଦାମିକା ଉପକରଣ ନ କିଣି ଯାହା ଅଛି ସେଥିରେ କାମ ଚଳାଇବାକୁ ହେବ । ରାମନଙ୍କ ପରିବାରରେ ବିଜ୍ଞାନ ଛଡ଼ା ସଙ୍ଗୀତର ବହୁତ ଆଦର ଥିଲା । ଘରେ ତାଙ୍କର ମୃଦଙ୍ଗ, ଡୁବିତାବଲା ଓ ବେହେଲା ପରି ବାଦ୍ୟଯନ୍ତ୍ର ମହଜୁଦ ଥାଏ । ଏଗୁଡ଼ିକ ବଜାଇଲା ବେଳେ କିପରି ମଧୁର ସ୍ୱରମାନ ବାହାରେ ତାହା ସେ ବୁଝି ପାରୁ ନ ଥିଲେ । ଏଗୁଡ଼ିକ ସମ୍ବନ୍ଧରେ ସେ ଗବେଷଣା କରିବାକୁ ସ୍ଥିର କରିଥିଲେ ।

ଆସୋସିଏସନର ପରୀକ୍ଷାଗାରକୁ ବିଭିନ୍ନ ପ୍ରକାରର ମୃଦଙ୍ଗ, ଡୁବିତାବଲା, ଢୋଲ ଓ ବେହେଲାମାନ ଅଣାଗଲା । କିପରି ଆଘାତ କଲେ, ବାଦ୍ୟଯନ୍ତ୍ରର ଆକାର ଓ ପରଦା ବଦଳାଇଲେ ନୂଆ ନୂଆ ସ୍ୱର ବାହାରୁଛି ତାହାର ପରୀକ୍ଷା ଆରମ୍ଭ ହୋଇଗଲା । ସେତେବେଳେ ଲଣ୍ଡନରେ ଲର୍ଡ ର୍ୟାଲେ ଧ୍ୱନିବିଜ୍ଞାନ ଉପରେ ଅତି ଉଚ୍ଚକୋଟୀର ଗବେଷଣା କରୁଥାନ୍ତି । ତାଙ୍କ ସହିତ ରାମନ ପତ୍ରାଳାପ କଲେ । ର୍ୟାଲେ ରାମନଙ୍କ ପରୀକ୍ଷାକୁ ବହୁତ ପ୍ରଶଂସା କରି ପତ୍ର ଲେଖିଲେ ।

ର୍ୟାଲେଙ୍କ ଚିଠି ପଢ଼ି ରାମନ ଆନନ୍ଦରେ ଗଦ୍‌ଗଦ୍ ହୋଇଗଲେ । ଯାଙ୍କ ଆସୋସିଏସନକୁ ବଙ୍ଗଳାର ଯେଉଁ ଗୁଣୀଲୋକମାନେ ଆସୁଥିଲେ ସେମାନେ ସେ ଚିଠି ପଢ଼ିଲେ, ନିଜ ଆଖିକୁ ବିଶ୍ୱାସ କରି ପାରିଲେନି । ଅବିଶ୍ୱାସ କରିବା କଥା – କାରଣ ୨୦/୨୧ ବର୍ଷର ଜଣେ ଭାରତୀୟ ଯୁବକ ବିଦେଶ ନଯାଇ, ଅନ୍ୟ କାହାଠାରୁ ପରାମର୍ଶ ବା ସାହାଯ୍ୟ ନନେଇ, ଅଫିସରୁ ୬/୭ ଘଣ୍ଟା ଫାଇଲ କାମ କରି ଫେରିଲା ପରେ ରାତି ରାତି ପରୀକ୍ଷା କରି ଯାହା ବାହାର କରିଛନ୍ତି ସେଥିରେ ନୂତନତା ଓ ମୌଳିକତା ପୂରି ରହିଛି । ଏକଥା ମାନିଛନ୍ତି ପୃଥିବୀ ବିଖ୍ୟାତ ବୈଜ୍ଞାନିକ ଲର୍ଡ ର୍ୟାଲେ, ଲଣ୍ଡନର ରୟାଲ ସୋସାଇଟିର ସଭାପତି ।

ରାମନଙ୍କ ଗବେଷଣା ଉପରେ ଆଲୋଚନା ପାଇଁ ଆସୋସିଏସନ୍‌ରେ ସଭା ଡକା ହେଲା । ସଭାପତି ହେଲେ କଲିକତା ହାଇକୋର୍ଟର ଜଜ ସାର୍ ଆଶୁତୋଷ ମୁଖର୍ଜି । ସାର ଆଶୁତୋଷ ଜଣେ ବିଶିଷ୍ଟ ଗଣିତ ବିଜ୍ଞାନୀ । ସେ ଲର୍ଡ ର୍ୟାଲେଙ୍କ ଚିଠି ପଢ଼ିଲେ, ରାମନଙ୍କ ବକ୍ତୃତା ଶୁଣିଲେ, ମୁଗ୍ଧ ହୋଇଗଲେ । ତାଙ୍କର ହୃଦ୍‌ବୋଧ ହେଲା – ଏ ଯୁବକ ପ୍ରେରଣା ଓ ଉତ୍ସାହର ଉତ୍ସ, ଏ ନୂତନତା ଓ ମୌଳିକତାର ପ୍ରତୀକ, ଏହାଙ୍କ ପ୍ରତିଭା ଅତୁଳନୀୟ, କୌଣସି ଅନୁଷ୍ଠାନକୁ ଜୀବନ୍ତ କରି ଗଢ଼ି ତୋଳିବାର କଳା ଏହାଙ୍କୁ ଜଣା । ପ୍ରକୃତରେ ଏ ହେଉଛନ୍ତି ସ୍ୱର୍ଗୀୟ ଅମୃତଲାଲଙ୍କ

ସ୍ୱପ୍ନର ଯୁବକ । ଏହି ଯୁବକ ଯଦି ସାହାଯ୍ୟ କରିବେ ତେବେ କଲିକତା ବିଶ୍ୱବିଦ୍ୟାଳୟର ପଦାର୍ଥବିଜ୍ଞାନ ଗବେଷଣା ପୃଥିବୀରେ ଶୀର୍ଷସ୍ଥାନ ଦଖଲ କରିବ ।

ରାମନଙ୍କର ଚାକିରିରେ ପଦୋନ୍ନତି ହେଲା, ଏଥି ସହିତ ରେଙ୍ଗୁନ୍‌କୁ ବଦଳି ହେଲା । ପଦୋନ୍ନତିରେ ସେ ଯେତିକି ଆନନ୍ଦିତ ହୋଇଥିଲେ ବଦଳି ପାଇଁ ତାଠାରୁ ବେଶି ଦୁଃଖିତ ହେଲେ । କାରଣ ରେଙ୍ଗୁନ ଗଲେ ସେ ଗବେଷଣା କରିବେ କିପରି ? କିନ୍ତୁ ଯିବାକୁ ହେବ । ଗବେଷଣା ପାଇଁ ତ ସେ ଚାକିରି ଛାଡି ପାରିବେ ନାହିଁ । ଚାକିରି ଛାଡିଲେ ସେ ଚଳିବେ କିପରି ? ଗୁଜୁରାଣ ମେଣ୍ଟିବ କିପରି ? ଏବେ ସିନା ଗବେଷଣା ଚାକିରି ହେଲାଣି, କେବଳ ଗବେଷଣା କରି ଲୋକେ ବେତନ ପାଉଛନ୍ତି ଓ ପେଟ ପୋଷୁଛନ୍ତି । ସେତେବେଳେ ଗବେଷଣା ଏ ଢ଼ଙ୍ଗରେ ହେଉ ନଥିଲା ।

ଗବେଷଣା ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ନଥିଲା କି ନିର୍ଦ୍ଦିଷ୍ଟ ସମୟ ନଥିଲା । ଆର୍ଥିକ ସାହାଯ୍ୟ କେଉଁଠି କିପରି ମିଳୁଥିଲା, କିନ୍ତୁ ମାସିକ ବେତନ ବ୍ୟବସ୍ଥା ନଥିଲା । ଫଳରେ ଆଗ୍ରହୀ ଲୋକେ ସମୟ ଅସମୟ, ସ୍ଥାନ ଅସ୍ଥାନ ବିଚାର ନକରି ଗବେଷଣାରେ ମାତୁଥିଲେ । ସାହାଯ୍ୟ ବା ଅନୁଦାନ ପାଇଁ ଗବେଷଣା ଅଟକୁ ନଥିଲା, କି ଗବେଷକ ଅପେକ୍ଷା କରୁ ନଥିଲେ । ରାମନ ବାଧ ହୋଇ ରେଙ୍ଗୁନ ଗଲେ । ତାଙ୍କ ବାପା ବେମାରିରେ ପଡିଲେ । ତାଙ୍କର ପୁଣି ନାଗପୁର ବଦଳି ହେଲା । ନାଗପୁରରୁ କଲିକତା ଆସି ମଝିରେ ମଝିରେ ସେ ଆସୋସିଏସନରେ ଗବେଷଣା ପରୀକ୍ଷା ତଦାରଖ କରୁଥିଲେ । ସେମିତି ଚାକିରିରେ ଥାଇ ସେ ପ୍ରାୟ ୨୦ଟି ଗବେଷଣା ପତ୍ର ଲଣ୍ଡନ ପତ୍ରିକାଗୁଡ଼ିକରେ ଛପାଇଲେ । ଏହି ପତ୍ରିକାଗୁଡ଼ିକ ପୃଥିବୀରେ ଖୁବ୍ ଜଣାଶୁଣା ଥିଲା । ବିଖ୍ୟାତ ବୈଜ୍ଞାନିକମାନଙ୍କର ଗବେଷଣା ସମ୍ବନ୍ଧରେ ଲେଖାମାନ ଏଗୁଡିକରେ ଛପା ହେଉଥିଲା । ଏହି ପତ୍ରିକାଗୁଡ଼ିକରେ ଲେଖା ଛପାଇ ରାମନ ଗବେଷଣା କ୍ଷେତ୍ରରେ ବେଶ୍ ଜଣାଶୁଣା ହୋଇ ଉଠିଲେ ।

## ଏକ ସନ୍ଧିକ୍ଷଣ

ଛୋଟ ହେଉ, ବଡ ହେଉ, ଗୋଟିଏ ଗୋଟିଏ ଘଟଣା ଜୀବନର ଗତିପଥ ବଦଳାଇ ଦିଏ । ବ୍ୟକ୍ତି ଦୁଇଟା ମଧ୍ୟରୁ ଗୋଟିଏ ବାଛି ଥାଏ, କାହିଁକି ସେପରି ବାଛେ ତାହା ସେ ଜାଣେ ନାହିଁ । ଏତିକି କୁହାଯାଇ ପାରେ ସେତେବେଳେ ତାହା ତାକୁ ଭଲ ଲାଗେ । ଯଦି ଅନ୍ୟଟି ବାଛିଥାନ୍ତା ସେ ଭିନ୍ନ ଏକ ବ୍ୟକ୍ତି ହୋଇଥାନ୍ତା । ସାଧାରଣ ଲୋକେ ଅତି ସରଳ ଭାବେ ଏହି ବଛାବଛିକୁ ବୁଝାଇ ଦିଅନ୍ତି । କହନ୍ତି – ସେପରି ହେବା ବୋଧହୁଏ ଈଶ୍ୱରଙ୍କ ଇଚ୍ଛାଥିଲା, ଅନ୍ୟପ୍ରକାରେ ହେବାକୁ ଈଶ୍ୱର ଚାହିଁ ନ ଥିଲେ ।

ବୋଧହୁଏ ଆମେ ପ୍ରତିଦିନ ଏଭଳି ଗୁଡ଼ିଏ ସନ୍ଧିକ୍ଷଣରେ ପହଞ୍ଚୁ, ଦୁଇଟିରୁ

ଗୋଟିକୁ ବାଛି ନେଉ । ଏଗୁଡ଼ିକ ବଡ ଧରଣର ଅଦଳବଦଳ କରନ୍ତି ନାହିଁ । ତେଣୁ ସେଗୁଡ଼ିକ ଆମର ବେଶୀଦିନ ମନେ ରହେନାହିଁ, ଭୁଲି ହୋଇଯାଏ । ଯେଉଁଥିରେ ଜୀବନର ଧାରା ବଦଳିଯାଏ ତାକୁ ଭୁଲିବ କିଏ ?

ସେମିତି ଏକ ସନ୍ଧିକ୍ଷଣ ଆସିଲା ରାମନଙ୍କ ଜୀବନରେ । ଛାତ୍ର ଥିଲାବେଳେ ବକ୍ତୃତା ଶୁଣିବାକୁ ନଯାଇ, ପରୀକ୍ଷାକୁ ବେଖାତିରି କରି ଗବେଷଣାରେ ମାତିଥିଲେ । କିନ୍ତୁ କଲେ କ'ଣ ? ବନ୍ଧୁବାନ୍ଧବଙ୍କ କଥାରେ ପଡି ଅର୍ଥବିଭାଗରେ ଚାକିରି କଲେ । ଦିନକୁ ୬/୭ ଘଣ୍ଟା ନିୟମିତ ଫାଇଲ ଘାଣ୍ଟିଲେ । ଯୋଗକୁ କଲିକତାର ଏକ ଅନୁଷ୍ଠାନ ତାଙ୍କୁ ପୁଣି ତାଙ୍କର ପ୍ରିୟ ଗବେଷଣା ଆଡକୁ ମୁହାଁଇ ଦେଲା । ବିଶ୍ରାମ ସମୟରେ ପରିଶ୍ରମ କରି, ଖିଆପିଆ ଓ ଶୁଆ ବସାର ନିୟମିତତା ଭୁଲି ସେ ଗବେଷଣା କଲେ । ପ୍ରାୟ ୨୦ଟି ଗବେଷଣା ପତ୍ର ଛପାଇଲେ, ମହେନ୍ଦ୍ରଲାଲ ସରକାରଙ୍କ ସ୍ୱପ୍ନ ସାର୍ଥକ ହେଲା । ତାଙ୍କ ପ୍ରତିଷ୍ଠିତ ଅନୁଷ୍ଠାନ ହେଲା ପୃଥିବୀର ଧ୍ୱନି ଆଲୋକ ସମ୍ବନ୍ଧୀୟ ପ୍ରଧାନ ଗବେଷଣା କେନ୍ଦ୍ର ।

ଏହି ସୁଯୋଗରେ ସାକ୍ଷାତ୍ ହେଲା ରାମନଙ୍କର ସାର୍ ଆଶୁତୋଷ ମୁଖର୍ଜିଙ୍କ ସହିତ । ସାର୍ ଆଶୁତୋଷ କେବଳ ଗୁଣୀ ଓ ପଣ୍ଡିତ ନଥିଲେ, ପ୍ରକୃତ ଗୁଣୀ ଓ ପଣ୍ଡିତଙ୍କୁ ଚିହ୍ନିବାର ଏକ ବିଶେଷ ଦକ୍ଷତା ତାଙ୍କଠାରେ ପୂରି ରହିଥିଲା । ସେ ହାଇକୋର୍ଟର ଜଜ୍ ଥିଲେ, କୁଳପତିରୂପେ ବଛାହେଲେ । କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗ ଗଠନ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ହେଲା । ବିଶେଷତଃ ବିଜ୍ଞାନ ବିଭାଗରେ ମୂଳରୁ ଉପଯୁକ୍ତ ଲୋକ ବାଛି ନ ବସାଇଲେ ପରେ ସବୁ ବିଗିଡିଯିବ । କଥାରେ ଅଛି ମଜଭୁତ ଘର ପାଇଁ ମୂଳଦୁଆ ଭଲଭାବେ ଶୋଧା ହେବା ଦରକାର । ପୁଣି ଏ ଭାର ତୁଲାଇବା ପାଇଁ ଉପଯୁକ୍ତ କାରିଗର ବା ମିସ୍ତ୍ରୀ ଥିବା ଦରକାର । ସବୁ ଯଦି ଏକାଠି ହୋଇଗଲା ଘରଟା ସୁରୁଖୁରୁରେ ଉଠୁରି ଯିବ ।

ଆସୋସିଏସନର ବୈଠକରେ ରାମନଙ୍କ ବକ୍ତୃତା ଶୁଣି, ତାଙ୍କ ଗବେଷଣାର ଦକ୍ଷତା ଦେଖି ସାର ଆଶୁତୋଷ ରାମନଙ୍କୁ ମନେ ମନେ ଜଣେ ଉପଯୁକ୍ତ ଅଧ୍ୟାପକ ବୋଲି ବାଛି ନେଇଥିଲେ । ପାଠ ପଢ଼ିବା ଓ ଗବେଷଣା କରିବାରେ ତାଙ୍କ ଭଳି ବ୍ୟକ୍ତି କ୍ୱଚିତ୍ ମିଳିବେ । କିନ୍ତୁ ରାମନ ଜଣେ ଉଚ୍ଚ ବେତନଭୋଗୀ ଅଫିସର । ସେତେବେଳେ ଭାରତର ଅର୍ଥବିଭାଗର ଡେପୁଟି ଏକାଉଣ୍ଟାଣ୍ଟ ଜେନେରାଲ । ମାସିକ ବେତନ ୨ ହଜାର ଟଙ୍କା । ସେ ଟଙ୍କା ୧୯୧୪ ମସିହାର ଟଙ୍କା । ତା'ର ମୂଲ୍ୟ କେତେ ୧୯୯୩ ମସିହା ଟଙ୍କାରେ ସହଜରେ ତୁଳନା କରି ହେବ ନାହିଁ ।

ରାମନଙ୍କୁ ଅଧ୍ୟାପକ ରୂପେ ନେଲେ କେତେ ଟଙ୍କା ଦେଇ ହେବ ? ଖୁବ୍

ହେଲେ ମାସକୁ ହଜାରେ ଟଙ୍କା, ପ୍ରାୟ ଅଧା ବେତନ । ଏଥିପାଇଁ କିଏ ବା ଲୋଭେଇବ ? ତା ଛଡା ଏଣେ ପୁଣି ଅଧାପକ ହୋଇ ଯୋଗ ଦେବେ ଓ ସେଇ ପଦରେ ହିଁ ଅବସର ନେବେ । ଅନ୍ୟ କୌଣସି ପଦୋନ୍ନତି ନାହିଁ । ଆଉ ସରକାରୀ ଚାକିରିରେ ରହିଲେ କୁଆଡେ ଯାଇ କୁଆଡେ଼ ଉଠିବେ । ନିହାତି କମ୍‌ରେ ଏକାଉଣ୍ଟାଣ୍ଟ ଜେନେରାଲ, ସେତେବେଳେ ଅର୍ଥ ବିଭାଗର ପ୍ରଥମ ସମ୍ମାନନୀୟ ବ୍ୟକ୍ତି ।

ତଥାପି ରାମନଙ୍କଠାରେ ଆଶୁତୋଷଙ୍କର ଭରସା ଥିଲା । ରାମନଙ୍କ ବକ୍ତୃତା ଯେ ଶୁଣିଛି, ତାଙ୍କର ଗବେଷଣାରେ ତନ୍ମୟତା ଯେ ଲକ୍ଷ୍ୟ କରିଛି ସେ ରାମନଙ୍କଠାରୁ ବହୁତ କିଛି ଆଶା କରିପାରିବ । ଆଶୁତୋଷ ରାମନଙ୍କୁ ସରକାରୀ ଚାକିରି ଛାଡି ବିଶ୍ୱବିଦ୍ୟାଳୟକୁ ପ୍ରଫେସର ହୋଇ ଆସିବାକୁ ପ୍ରସ୍ତାବ ଦେଲେ । ରାମନଙ୍କର ମଧ ଆଶୁତୋଷଙ୍କ ଦକ୍ଷତା ଉପରେ ଭରସା ଥିଲା । ରାମନ ଚାକିରି ଛାଡି ଦେବାକୁ ରାଜି ହୋଇଗଲେ । ଏକଥା ଯିଏ ଶୁଣିଲା ସିଏ ହଠାତ୍ ବିଶ୍ୱାସ କରି ପାରିଲା ନାହିଁ ।

ଲୋକେ କୁହାକୁହି ହେଲେ ରାମନ ଗବେଷଣା ପାଇଁ ବୋଧହୁଏ ପାଗଳ ହୋଇ ଯାଇଥିଲେ । ନ ହେଲେ ଏଭଳି ତ୍ୟାଗ କ'ଣ କିଏ କରେ ? ଅଳ୍ପ କେତୋଟି ଟଙ୍କା ପାଇଁ ଭାଇ ଭାଇର ଗଳା କାଟି ଦେଉଛି, ବାପ ପୁଅଙ୍କର ସମ୍ପର୍କ ତିକ୍ତ ହୋଇ ଯାଉଛି, ଶିକ୍ଷିତ ଲୋକେ ମାନବିକତା କ'ଣ ବୁଝୁନାହାନ୍ତି । ଅଥଚ ଯୁବକ ରାମନ କ୍ଷମତା, ପଦୋନ୍ନତି ଓ ଉଚ୍ଚ ବେତନ ପାଦରେ ଆଡେଇ ଦେଇ ଜଣେ ପ୍ରଫେସର ହେବାକୁ ବସିଛନ୍ତି । ଏପରି ନ କରିବାକୁ ତାଙ୍କର ଅନେକ ସମ୍ପର୍କୀୟ ବୁଝାବୁଝି କଲେ । ଫଳ କିଛି ହେଲା ନାହିଁ । ରାମନ ଯାହା ସ୍ଥିର କରିଛନ୍ତି ସେଥିରେ ଅଟଳ ରହିଲେ ।

୧୯୧୪ ମାର୍ଚ୍ଚ ମାସରେ ବିଶ୍ୱବିଦ୍ୟାଳୟର ବିଜ୍ଞାନକଲେଜ ପାଇଁ ଶିଳାନ୍ୟାସ ଉତ୍ସବ ପାଳିତ ହେଲା । କୁଳମତି ସାର୍ ଆଶୁତୋଷ ମୁଖର୍ଜି ଭାବବିହ୍ୱଳ ହୋଇ ଘୋଷଣା କଲେ "ବନ୍ଧୁଗଣ, ଉଦ୍ଦେଶ୍ୟ ଭଲ ଥିଲେ ସବୁ ଭଲରେ ହୁଏ, ଯୋଗାଡ କଲେ ବହୁତ ଟଙ୍କା ମିଳିବ, କିନ୍ତୁ ଭଲ ଲୋକଟିଏ ମିଳିବ କେଉଁଠୁ ? ଏଥିପାଇଁ ଆମେ ଚିନ୍ତିତ ଥିଲୁ । ସୌଭାଗ୍ୟକୁ ପଦାର୍ଥ ବିଜ୍ଞାନରେ ଆମକୁ ଜଣେ ଯୋଗ୍ୟ ବ୍ୟକ୍ତି ମିଳିଛନ୍ତି । ଆମ ପାଇଁ ସେ ଅସୀମ ସ୍ୱାର୍ଥ ତ୍ୟାଗ କରିଛନ୍ତି । ସରକାରୀ ଚାକିରି ଛାଡି, ପାଉଥିବା ବେତନର ଅଧା ନେଇ ସେ ଆମ ବିଜ୍ଞାନ କଲେଜରେ ପ୍ରଫେସର ହେବାକୁ ରାଜି ହୋଇଛନ୍ତି । ଅନୁଷ୍ଠାନର ଭାଗ୍ୟ ଯେ ଏଭଳି ଜଣେ ଗୁଣୀ, ମେଧାବୀ, ସତ୍ୟାନୁସନ୍ଧାନୀ ଆମକୁ ସହଜରେ ମିଳିଗଲେ ।" ଶ୍ରୋତୃମଣ୍ଡଳୀ ମଧରେ ଆନନ୍ଦର ଲହରୀ ଖେଳିଗଲା । ଚାରିଆଡ ବହୁ ସମୟଧରି କରତାଳିରେ କମ୍ପି ଉଠିଲା ।

୧୯୧୪ରେ ପ୍ରଥମ ବିଶ୍ୱଯୁଦ୍ଧ ଲାଗିଗଲା । ବିଜ୍ଞାନକଲେଜ କାମ ଟିକିଏ ଧିମେଇଗଲା । ତା ଛଡା ରାମନଙ୍କ ଯୋଗ ଦେବାରେ କେତେକ ଆନୁଷ୍ଠାନିକ କଟକଣା ଦେଖାଦେଲା । ସାର୍ ତାରକନାଥ ପାଲିତ ଓ ସାର ରାସବିହାରୀ ଘୋଷ ବିଜ୍ଞାନକଲେଜକୁ ଅନେକ ଟଙ୍କା ଦାନ କରିଥିଲେ । ସେତେବେଳେ ରାଜା, ଜମିଦାର ଓ ଧନୀଲୋକମାନେ ଏଭଳି ଦାନ ଦେବାକୁ ମହତ୍ କାର୍ଯ୍ୟ ମନେ କରୁଥିଲେ । ସମସ୍ତେ ଯେ ଦାନ କରିବାକୁ ଆଗେଇ ଆସୁଥିଲେ ତାହା ନୁହେଁ । କେତେକ ଅକୁଣ୍ଠ ଚିତ୍ତରେ ଦାନ କରି ଖୁବ୍ ବଡ ବଡ ଅନୁଷ୍ଠାନ ଗଢୁଥିଲେ; ଏଭଳି କାର୍ଯ୍ୟ କରିବାକୁ ପୁଣ୍ୟ ମନେ କରୁଥିଲେ ।

ସାର୍ ତାରକନାଥ ପାଲିତଙ୍କ ଦାନରେ ବିଜ୍ଞାନକଲେଜରେ ପଦାର୍ଥ ବିଜ୍ଞାନ ଓ ରସାୟନବିଜ୍ଞାନର ଦୁଇଟି ଅଧ୍ୟାପକ ପଦ ସୃଷ୍ଟି ହେଲା । ସେଥିରେ ସର୍ତ୍ତ ଥିଲା ଯେ ପଦାର୍ଥବିଜ୍ଞାନରେ ଯେ ପାଲିତ ପ୍ରଫେସର ହେବେ ସେ ବିଲାତରୁ ଉଚ୍ଚଶିକ୍ଷା ଲାଭ କରିଥିବେ । ରାମନ ତ ବିଲାତ ଯାଇ ନ ଥିଲେ । ତାଙ୍କୁ ପାଲିତ ପ୍ରଫେସର କଲେ ଏ ସର୍ତ୍ତ ଭଙ୍ଗ ହେବ । କ'ଣ କରାଯିବ ? ଅର୍ଥଦାତାଙ୍କ ସର୍ତ୍ତ ରଖିବାକୁ ବସିଲେ ରାମନଙ୍କ ପରି ପ୍ରତିଭାକୁ ହରେଇବାକୁ ପଡିବ ।

ଆଶୁତୋଷ ଥିଲେ ଜଣେ ଖ୍ୟାତନାମା ବିଚାରପତି । ତାଙ୍କ ବିଚାରରେ ତ୍ରୁଟି ହୁଅନ୍ତା କିପରି ? ରାମନଙ୍କ ପ୍ରତିଭା ନିକଟରେ ଉଚ୍ଚଶିକ୍ଷା କି କେବେ ତୁଳନୀୟ ? ସେତେବେଳକୁ ବିଲାତର ବିଖ୍ୟାତ ପତ୍ରପତ୍ରିକାରେ ରାମନଙ୍କ ଗବେଷଣା ଛପା ହୋଇଥାଏ, ପୃଥିବୀର ଖ୍ୟାତନାମା ବୈଜ୍ଞାନିକ ଲର୍ଡ ରୟାଲେ ରାମନଙ୍କ ଉଚ୍ଚ ପ୍ରଶଂସା କରିଥାନ୍ତି, ଆଉ ବିଲାତ ଯାଇଥିଲେ ଅଧିକ କ'ଣ ହୋଇଥାନ୍ତା ? ପ୍ରତିଷ୍ଠାତାଙ୍କ ସର୍ତ୍ତ ପରିବର୍ତ୍ତନ କରାଗଲା ।

ରାମନ ସରକାରୀ ପଦରୁ ଇସ୍ତଫା ଦେଲେ । ସେତେବେଳେ ସେ କଲିକତାର ଡାକତାର ବିଭାଗର ଏକାଉଣ୍ଟାଣ୍ଟ ଜେନେରାଲ ହୋଇଥିଲେ । ୧୯୧୧ ସାଲରୁ ମାତ୍ର ୨୩ ବର୍ଷ ବୟସ ହୋଇଥିଲା ବେଳେ ସେ ଏହି ପଦ ଅଧିକାର କରିଥିଲେ । ସେ ପର୍ଯ୍ୟନ୍ତ କୌଣସି ଭାରତୀୟ ବ୍ରିଟିଶ୍ ଶାସନରେ ସେଇ ପଦ ଅଧିକାର କରି ନ ଥିଲେ ।

ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ କହିଥିଲେ ରାମନଙ୍କୁ ଯଦି ଆଶୁତୋଷ ମୁଖର୍ଜି ଅଧ୍ୟାପକ କରି ନେଇ ନଥାନ୍ତେ ସେ ଭାରତର ଜଣେ ଦକ୍ଷ ଓ ଦୋଷତ୍ରୁଟିହୀନ ଏକାଉଣ୍ଟାଣ୍ଟ ଜେନେରାଲ ହୋଇ ଅବସର ନେଇଥାନ୍ତେ । କିନ୍ତୁ ବିଜ୍ଞାନରେ ଅପୂରଣୀୟ କ୍ଷତି ହୋଇଥାନ୍ତା । ଦେଶ ନୋବେଲପୁରସ୍କାର ପାଇବାରେ ପଛେଇ ଯାଇଥାନ୍ତା । କେବଳ ସେତିକି ନୁହେଁ, ରାମନଙ୍କ ଆଦର୍ଶ, ପ୍ରେରଣା ଓ ଉତ୍ସାହରେ ଯେଉଁ ଶହଶହ

ଯୁବକ ବିଜ୍ଞାନ ଗବେଷଣାରେ ମାତି ଉଠିଲେ ତାହା ଏତେ ଶୀଘ୍ର ହୋଇ ପାରି ନଥାନ୍ତା ।

ରାମନଙ୍କର ସାର୍ ଆଶୁତୋଷଙ୍କ ବ୍ୟକ୍ତିତ୍ୱ ଓ ଗୁଣଗ୍ରାହିତା ଉପରେ ଭରସା ନ ଥିଲେ ସେ ଏଭଳି ପଦକ୍ଷେପ ନେଇ ନଥାନ୍ତେ । ରାମନଙ୍କର ନିଜ ଉପରେ ଓ ନିଜର ପାରିବାପଣିଆ ଉପରେ ଯେତିକି ଆତ୍ମବିଶ୍ୱାସ ଥିଲା ଆଶୁତୋଷଙ୍କ ଉପରେ ସେତିକି ଆସ୍ଥା ଥିଲା । ତେଣୁ ସେ ଏତେ ବଡ ସ୍ୱାର୍ଥତ୍ୟାଗ କରିବାକୁ ସାହସ ବାନ୍ଧିଲେ; ନିଶ୍ଚିତ ବର୍ତ୍ତମାନକୁ ଛାଡି ଅନିଶ୍ଚିତ ଭବିଷ୍ୟତ ପଛରେ ଗୋଡେଇଲେ । ଏପରି ନକରିବାକୁ ଜ୍ଞାନୀ ଓ ପଣ୍ଡିତମାନେ ଉପଦେଶ ଦେଇ ଯାଇଛନ୍ତି । ଶ୍ଳୋକରେ କହିଛନ୍ତି "ଯୋ ଧ୍ରୁବାଣି ପରିତ୍ୟଜ୍ୟ ଅଧ୍ରୁବାଣି ନିଷେବତେ, ଧ୍ରୁବାଣି ତସ୍ୟ ନଶ୍ୟନ୍ତି ଅଧ୍ରୁବାଣି ନଷ୍ଟମେବଚ ।" ଏହା ସତ କଥା, ଚିରାଚରିତ ପନ୍ଥା ପଛରେ ଯେ କେବଳ ଗୋଡାଏ, କେବଳ ଗୁଳାରେ ବାଟ ଚାଲେ, ଲୋକେ ଯାହା ହୋଇଛନ୍ତି ସେ କେବଳ ସେତିକି ହୁଏ ବା ସେମାନେ ଯାହା କରିଛନ୍ତି କେବଳ ସେତିକି କରେ । ରାମନଙ୍କ ପାଇଁ କ'ଣ ଏମିତି ଏକ ଧରାବନ୍ଧା ନିୟମ ଜଗି ଚଳିବା ଶୋଭା ପାଇଥାନ୍ତା ?

୧୯୧୭ରେ ସେ କଲିକତା ବିଶ୍ୱବିଦ୍ୟାଳୟର ପ୍ରେସିଡେନ୍‌ସି କଲେଜରେ ଯୋଗ ଦେଲେ । ସେ ହେଲେ ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନରେ ପ୍ରଥମ ପାଲିତ ପ୍ରଫେସର । ସେତେବେଳେ ତାଙ୍କ ବୟସ ମାତ୍ର ୩୦ ବର୍ଷ । କିନ୍ତୁ ତାଙ୍କ କର୍ମପୀଠ ବଉବଜାର ଷ୍ଟ୍ରିଟ୍‌ର ୨୧୦ ନମ୍ବର ଘରକୁ ଭୁଲିଲେ ନାହିଁ । ପ୍ରତିଦିନ ସକାଳେ ସେଠାକୁ ଆସିଲେ, ସେଠାକାର ଗବେଷଣା ଚାଲୁ ରଖିଲେ । ଉପର ବେଳା ବିଜ୍ଞାନ କଲେଜକୁ ଯାନ୍ତି; ସେଠାରେ ଛାତ୍ର, ଅଧ୍ୟାପକ, ଗବେଷକ ଓ ପରୀକ୍ଷାଗାର, ସମସ୍ତଙ୍କ ଦାୟିତ୍ୱ ଯତ୍ନ ସହକାରେ ସମ୍ଭାଳନ୍ତି । ଲୋକେ ସବୁକାମ ଆବୋରି ବସନ୍ତି ଓ ଉପରେ ଉପରେ ଭାସି ବୁଲନ୍ତି । ରାମନ କିନ୍ତୁ ପୂରାପୂରି ଭିନ୍ନ ଧରଣର । ଖାଲି ନାଁ କରିବାକୁ ଗୁଡିଏ ଫାଲତୁ କାମ ଆବୋରି ବସୁ ନ ଥିଲେ । ଗବେଷଣା ସହିତ ଯାହାର ସମ୍ପର୍କ ନ ଥିଲା, ତା ପାଖ ପଶୁ ନ ଥିଲେ । ଅଧିକ କାମର ଦାୟିତ୍ୱ ନେଲେ ଅଧିକ ତତ୍ପରତା ସହିତ ସେ ତାକୁ ତୁଲାଉଥିଲେ ।

ମନେ ହେଉଥିଲା ରାମନଙ୍କ ଭିତରେ ଯେପରି ଅସୀମ ଶକ୍ତି ଭରି ରହିଛି । ପ୍ରତିଦିନ ସୂର୍ଯ୍ୟୋଦୟ ବେଳକୁ ସେ ନିତ୍ୟକର୍ମ ସାରି ସତେଜ ଓ ପ୍ରଫୁଲ୍ଲ ମନରେ ଦୈନନ୍ଦିନ କାର୍ଯ୍ୟ କରିବାକୁ ପ୍ରସ୍ତୁତ ହୋଇଯାଉଥିଲେ । ପ୍ରକୃତରେ ସମୟ ତାଙ୍କ ସଙ୍ଗେ ତାଳଦେଇ ଆଗେଇପାରୁ ନଥିଲା । ଲୋକଙ୍କୁ ସମୟ ଅଣ୍ଟେନାହିଁ; ବହୁତ କାର୍ଯ୍ୟ ଠିକ୍ ସମୟରେ ହୋଇ ନପାରି ବଳିପଡେ । ରାମନଙ୍କ କାର୍ଯ୍ୟ କରିବା ଢଙ୍ଗ ଏପରି ସହଜ ଥିଲା

ଯେ ବରଂ ସମୟ ପଛେଇ ଯାଉଥିଲା । ସମୟ-ସୀମା ମଧ୍ୟରେ ବହୁତ କାର୍ଯ୍ୟ ସେ କରିପାରୁଥିଲେ ।

୧୯୧୯ ମସିହାରେ ଅମୃତଲାଲ ସରକାର ମୃତ୍ୟୁବରଣ କଲେ । ଏବେ ଆସୋସିଏସନର ଦାୟିତ୍ୱ ପୂରା ରାମନଙ୍କ ଉପରେ ପଡ଼ିଲା । ସେ ସମ୍ପାଦକ ରୂପେ ନିର୍ବାଚିତ ହେଲେ । କୌଣସି ବେତନ ବା ପାରିଶ୍ରମିକ ନନେଇ ସେ ଏ ଦାୟିତ୍ୱ ଅତି ଯତ୍ନର ସହିତ ତୁଲାଇଲେ । ୧୯୩୩ରେ କଲିକତାରୁ ବିଦାୟ ନେବା ପର୍ଯ୍ୟନ୍ତ ସେ ଆସୋସିଏସନ ସହିତ ଜଡ଼ିତ ହୋଇ ରହିଥିଲେ ।

ଏହି ଆସୋସିଏସନ କ୍ଷୁଦ୍ର ହେଲେ ମଧ୍ୟ ସାରା ପୃଥିବୀରେ ଖ୍ୟାତି ଅର୍ଜିଥିଲା । ୧୯୧୭ ଜୁଲାଇରେ ଅଧ୍ୟାପକ ହେବା ପୂର୍ବରୁ ସେ ପ୍ରାୟ ୩୦ଟି ଗବେଷଣାପତ୍ର ଲଣ୍ଡନର ବିଖ୍ୟାତ ପତ୍ରିକାମାନଙ୍କରେ ଛପାଇଥିଲେ । ସେଥିରୁ ଧ୍ୱନିବିଜ୍ଞାନ ଉପରେ ୨୦ଟି ଲେଖା ହୋଇଥିଲା । ଅବଶିଷ୍ଟଗୁଡ଼ିକ ଆଲୋକ ଉପରେ । ରାମନ ବିଲାତ ନ ଯାଇଥିଲେ ମଧ୍ୟ ସେତେବେଳକୁ ଇଉରୋପର ବୈଜ୍ଞାନିକମାନେ ରାମନଙ୍କ ନାମ ସହିତ ବେଶ୍ ପରିଚିତ ହୋଇ ଯାଇଥିଲେ । ଆସୋସିଏସନର ୨୧୦ ନମ୍ବର ବଉବଜାର ଗବେଷଣାଗାର ପୃଥିବୀର ପ୍ରସିଦ୍ଧ ଗବେଷଣାଗାର ମଧ୍ୟରୁ ଗୋଟିଏ ବୋଲି ଗଣା ହେଉଥିଲା ।

# ପରିଚ୍ଛେଦ-୩

## ବିଲାତ ଯାତ୍ରା

ବ୍ରିଟିଶ୍ ସାମ୍ରାଜ୍ୟରେ ଥିବା ବିଶ୍ୱବିଦ୍ୟାଳୟଗୁଡ଼ିକର ଏକ ସମ୍ମିଳନୀ ଅକ୍ସଫୋର୍ଡଠାରେ ହେଉଥାଏ । କଲିକତା ବିଶ୍ୱବିଦ୍ୟାଳୟର କୁଳପତି ହିସାବରେ ଆଶୁତୋଷ ମୁଖର୍ଜିଙ୍କୁ ବିଲାତ ଯିବାକୁ ନିମନ୍ତ୍ରଣ ଆସିଲା । ଆଶୁତୋଷ ନିଜେ ନଯାଇ ବିଶ୍ୱବିଦ୍ୟାଳୟର ପ୍ରତିନିଧି ହିସାବରେ ରାମନଙ୍କୁ ପଠାଇବାକୁ ଚାହିଁଲେ । କାରଣ ସେ ଭାବୁଥିଲେ ଯେ ରାମନଙ୍କ ପରି ବୈଜ୍ଞାନିକଙ୍କର ଏହି ଗସ୍ତ ଫଳରେ ବିଲାତ ବୈଜ୍ଞାନିକମାନଙ୍କ ସହ ପରିଚୟ ହେବ । ତାହାହେଲେ ରାମନଙ୍କ ପ୍ରତିଭା ଅଧିକ ଉପାଣିତ ହେବାର ସୁଯୋଗ ଆସିବ । ତା'ଛଡା ରାମନଙ୍କ ପରି ଜଣେ ବୈଜ୍ଞାନିକ ଓ ବାଗ୍ମୀ ବିଶ୍ୱବିଦ୍ୟାଳୟର ପ୍ରତିନିଧିତ୍ୱ କରି ଦେଶର ଓ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା ଅନେକଗୁଣ ବଢ଼ାଇ ଦେବେ ।

୧୯୨୧ରେ ଏହି ସମ୍ମିଳନୀ ହେଉଥାଏ । କେବଳ ସେଇବର୍ଷ ରାମନଙ୍କର ୧୮ଟି ଗବେଷଣାପତ୍ର ଛପା ହୋଇଥାଏ । ପ୍ରେସିଡେନ୍‌ସି କଲେଜ ଓ ଆସୋସିଏସନର ଗବେଷଣାଗାରରେ ତାଙ୍କର ଅନେକ ସହକାରୀ ଓ ଛାତ୍ର ତାଙ୍କ ସହିତ ଧ୍ୱନି ଓ ଆଲୋକ ଉପରେ ଗବେଷଣା ଚଳାଇ ଥାନ୍ତି । ସେତେବେଳକୁ ସେମାନଙ୍କର ପ୍ରାୟ ୬୦ଟି ଗବେଷଣାପତ୍ର ବିଦେଶ ପତ୍ରିକାରେ ଛପା ହୋଇଥାଏ । ପୃଥିବୀର ବୈଜ୍ଞାନିକଙ୍କ ମହଲରେ ରାମନ ସେତେବେଳକୁ ବେଶ୍ ପରିଚିତ ହୋଇଗଲେଣି ।

ରାମନ ଜଳଜାହାଜରେ ଲଣ୍ଡନ ବାହାରିଲେ । ସେତେବେଳେ ରାମନଙ୍କୁ ବୟସ ମାତ୍ର ୩୩ ବର୍ଷ । ସେ ବିଶ୍ୱବିଦ୍ୟାଳୟର ଜଣେ ତରୁଣ ଅଧ୍ୟାପକ । ମନରେ ତାଙ୍କର ଭରି ରହିଛି ଅନେକ ଗବେଷଣା ସମସ୍ୟା । ର୍‍ୟାଲେ, ରଦରଫୋର୍ଡ, ହେଲ୍‌ମହୋଲଜ, ଟିଣ୍ଡଲଙ୍କ ଗବେଷଣା ସହିତ ସେ ପରିଚିତ । ସେମାନଙ୍କ ଲେଖାମାନ ସେ ପଢ଼ିଛନ୍ତି ଓ ସେଇ ଗବେଷଣା ଉପରେ ଚିନ୍ତା କରିଛନ୍ତି । ଏବେ ସେମାନଙ୍କ ଦେଶକୁ ସେ ଯାତ୍ରା କରୁଛନ୍ତି । ସେମାନଙ୍କ ପାଖରେ ଠିଆ ହୋଇ ହାତକୁ ହାତ ମିଳାଇ ଆଲୋଚନା କରିବାକୁ ସୁଯୋଗ ଆସିବ । ଏଥିରେ କିଏ ବା ଭାବବିହ୍ୱଳ ନହେବ ? ରାମନ ସବୁଠାରେ ଜିଣିଛନ୍ତି, ସବୁ ପରୀକ୍ଷାରେ ପ୍ରଥମ ହୋଇଛନ୍ତି, ସମସ୍ତେ ତାଙ୍କୁ ପ୍ରଶଂସା କରିଛନ୍ତି । ତେଣୁ ତାଙ୍କ ମନରେ ଅକାତ ଆତ୍ମବିଶ୍ୱାସ ପୂରି ରହିଛି । ଟିକିଏ ବି ନ୍ୟୁନମନୋଭାବ ନାହିଁ । ତେଣୁ ଉଦ୍‌ବେଗ ସହିତ ତାଙ୍କ ମନରେ ଗର୍ବ ଓ ଆନନ୍ଦର ଜୁଆର ଖେଳିଯାଉଥାଏ ।

ରାମନଙ୍କ ଜାହାଜ ଭୂମଧ୍ୟସାଗରରେ ଆଗେଇ ଯାଉଥାଏ । ଚାରିଆଡେ ଘେରିଥାଏ ନୀଳ ସାଗର ଓ ଉପରେ ନୀଳ ଆକାଶ । ଆକାଶ ଓ ସାଗରର ନୀଳିମା ତାଙ୍କୁ ମନ୍ତ୍ରମୁଗ୍ଧ କରିଦେଲା । ପିଲାବେଳେ ଭାଇଜାଗରେ ସମୁଦ୍ରକୂଳେ ବୁଲୁଥିଲାବେଳେ ସେ ଅନେକଥର ଆକାଶ ଓ ସାଗରର ଏ ମନୋହର ମିଳନ ଦେଖିଛନ୍ତି । ସେପରି ଦୃଶ୍ୟରେ ସେ ଆତ୍ମହରା ହେଉଥିଲେ ।

କିନ୍ତୁ ଆଜି ପରିସ୍ଥିତି ଭିନ୍ନ । ସେ ଜଣେ ଅଭିଜ୍ଞ ଅଧ୍ୟାପକ, ପଦାର୍ଥ ବିଜ୍ଞାନରେ ତାଙ୍କର ଗଭୀର ଜ୍ଞାନ, ମୁଣ୍ଡରେ ଗବେଷଣାର ବିଭିନ୍ନ ପ୍ରଶ୍ନ ଉଙ୍କି ମାରୁଛି । ଆଖି ଉପରେ ଉପରେ ଭାସି ନଯାଇ ସବୁକଥାକୁ ନିରେଖି ଦେଖୁଛି । ତାଙ୍କୁ ଭୂମଧ୍ୟସାଗରର ନୀଳଜଳ ସ୍ୱତନ୍ତ୍ର ମନେହେଲା । ମନେହେଲା ଏ ନୀଳିମା ଅଧିକ ଗାଢ଼ । ତାହାହେଲେ ଲର୍ଡ ର୍ୟାଲେ ସାଗରଜଳର ନୀଳିମା ବିଷୟରେ ଯାହା ଲେଖିଛନ୍ତି କ'ଣ ତାହା ଭୁଲ ? "ନୀଳ ଆକାଶର ପ୍ରତିଫଳନ ହେତୁ ସାଗରର ବର୍ଣ୍ଣ ନୀଳ" ବୋଲି ର୍ୟାଲେ ତାଙ୍କ ଗବେଷଣା ପତ୍ରରେ ଲେଖିଥିଲେ ।

ଏ ସିଦ୍ଧାନ୍ତ ଭୁଲ ବୋଲି ତାଙ୍କର ମନେହେଲା । ର୍ୟାଲେଙ୍କ ପରି ଜଣେ ପୃଥିବୀ ବିଖ୍ୟାତ ବୈଜ୍ଞାନିକଙ୍କ ସିଦ୍ଧାନ୍ତକୁ ଭୁଲ ବୋଲି କହିବା ଦୂରେ ଥାଉ ମନରେ କେହି କଳ୍ପନା କରିପାରିବ ନାହିଁ । କିନ୍ତୁ ରାମନ ଥିଲେ ଭିନ୍ନ ପ୍ରକାରର । ସେ ଖାଲି କହିଦେଇ ବା ଭାବିନେଇ ଚୁପ୍ ରହିଲେ ନାହିଁ, ପରୀକ୍ଷା କରିବାକୁ ଧଇଁ ହୋଇଗଲେ । ଲକ୍ଷ୍ୟ କଲେ ବେଳେବେଳେ ଆକାଶର ନୀଳିମାଠାରୁ ଭୂମଧ୍ୟସାଗରର ନୀଳିମା ଅଧିକ ଗାଢ଼ । ଏହା କିପରି ସମ୍ଭବ ?

ସୌର ରଶ୍ମିକୁ ଚନ୍ଦ୍ର ପ୍ରତିଫଳନ କରେ । ଚନ୍ଦ୍ରକିରଣ କ'ଣ ସୂର୍ଯ୍ୟ କିରଣଠାରୁ ଅଧିକ ପ୍ରଖର ହୋଇପାରେ ? ନା, ପ୍ରତିଫଳିତ ଆଲୋକ ଆପତିତ ଆଲୋକଠାରୁ ଅଧିକ ପ୍ରଖର ହୋଇପାରେ ନା, ହେଲେ ସମାନ ହୋଇପାରେ । ସାଗର ଅଧିକ ନୀଳ ଦିଶେ କାହିଁକି ? ଏହା କେବଳ ଆକାଶର ପ୍ରତିଫଳନ ହେତୁ ଏତେ ନୀଳ ନୁହେଁ । ପରୀକ୍ଷା କରି ଏହା ଦେଖାଇବାକୁ ହେବ । ଖାଲି କହିଦେଲେ ଚଳିବନି । କୁହାବୋଲାରେ ବିଜ୍ଞାନ ତଥ୍ୟ ପ୍ରମାଣିତ ହୁଏ ନାହିଁ । ଏଥିପାଇଁ ଭାବିଚିନ୍ତି ପରୀକ୍ଷା କରିବାକୁ ହେବ । ଦରକାର ହେଲେ ପରୀକ୍ଷାରେ ନୂଆ ନୂଆ ଉପକରଣ ଓ ଯନ୍ତ୍ରପାତି ଖଞ୍ଜିବାକୁ ହେବ । ମନେ ମନେ ସ୍ଥିର କଲେ ଫେରିଲା ବେଳେ ସେ ଏହାର ଅଧିକ ପରୀକ୍ଷା କରିବେ ।

ଇଂଲଣ୍ଡରେ ଖୁବ୍ ଅଳ୍ପ ଦିନ ରହିଲେ, କେତେ ସପ୍ତାହ ମାତ୍ର । ହେଲେ ବି ଏହି ପ୍ରଥମ ଯାତ୍ରାରେ ଯାହା ସବୁ ଘଟିଲା ସେ ଜୀବନସାରା ମନେ ରଖିଲେ ।

ଦେଶବାସୀଙ୍କ ପକ୍ଷେ ମଧ୍ୟ ତାହା ଅବିସ୍ମରଣୀୟ । ଇଂଲଣ୍ଡର ପୃଥିବୀ ବିଖ୍ୟାତ ବୈଜ୍ଞାନିକମାନଙ୍କୁ ସେ ସହଜରେ ସାକ୍ଷାତ୍ କରିପାରିଲେ । ସାର୍ ଜେଜେ ଟମ୍ସନ, ରଦରଫୋର୍ଡ, ବ୍ରାଗ ଓ ଅନ୍ୟମାନଙ୍କୁ ଦେଖି, ତାଙ୍କ ମୁହଁରୁ ତାଙ୍କ ଗବେଷଣା କଥା ଶୁଣି ସେ ଅଭିଭୂତ ହୋଇ ପଡିଲେ ।

ଟମ୍ସନ୍ ଇଲେକଟ୍ରନ ସମ୍ବନ୍ଧରେ ବହୁ ପରୀକ୍ଷା କରିଥିଲେ । ତାଙ୍କର ଇଲେକଟ୍ରନ ସମ୍ବନ୍ଧୀୟ ଗବେଷଣା ଏବେ ବି ପାଠ୍ୟପୁସ୍ତକରେ ପ୍ରଧାନ ଆଲୋଚ୍ୟ ବିଷୟ । ପରମାଣୁକେନ୍ଦ୍ରରେ ନ୍ୟୁକ୍ଲିୟସ ଅଛି ଏକଥା ପ୍ରଥମେ ରଦରଫୋର୍ଡ ପରୀକ୍ଷା କରି ଜଣାଇଥିଲେ । ଏପରି ବିଖ୍ୟାତ ବୈଜ୍ଞାନିକମାନଙ୍କ ଗହଣରେ ଆସିବାରୁ ତାଙ୍କର ଆତ୍ମବିଶ୍ୱାସ ଅଧିକ ବଢ଼ିଗଲା । ସେମାନଙ୍କ ସହିତ କଥାବାର୍ତ୍ତା କରି ଗବେଷଣାର ସୁବିଧା ଅସୁବିଧା ଜାଣିବାର ସୁଯୋଗ ପାଇଲେ ।

ଏହି ସମୟରେ ଗୋଟିଏ ବଡ କୌତୂହଳ ଘଟଣା ଘଟିଲା । ସେ ବକ୍ତୃତା କକ୍ଷର ପଛ ବେଞ୍ଚରେ ବସିଥାନ୍ତି । ରଦରଫୋର୍ଡ ଆଗରେ ବସିଥାନ୍ତି । ଚିହ୍ନାପରିଚ ହୋଇ ନଥାଏ । ହଠାତ୍ ପଛକୁ ଅନେଇ ରଦରଫୋର୍ଡ ରାମନଙ୍କୁ ଚିହ୍ନି ପାରିଲେ ଓ ତାଙ୍କୁ ପାଖକୁ ଆସିବାକୁ କହିଲେ । ରଦରଫୋର୍ଡ ତାଙ୍କୁ ଦେଖି ନଥିଲେ ସିନା, କିନ୍ତୁ ତାଙ୍କର ଛପା ହୋଇଥିବା ଗବେଷଣାପତ୍ର ଆଗରୁ ପଢ଼ିଥିଲେ ।

ରାମନ ସବୁବେଳେ ମୁଣ୍ଡରେ ଦକ୍ଷିଣୀ ଠେକା ବା ପଗଡି ପିନ୍ଧନ୍ତି । ଜଣେ ମଜାରେ ତାଙ୍କୁ ପଚାରିଲେ ସେ ସବୁବେଳେ ମୁଣ୍ଡରେ ଠେକା ବାନ୍ଧନ୍ତି କାହିଁକି ? ସେ ହସି ହସି ଉତ୍ତର ଦେଲେ "ଏପରି ନବାନ୍ଧିଲେ ଗର୍ବରେ ମୋ ମୁଣ୍ଡଟା ଫୁଲି ଉଠିବ । ତା ଛଡା ଜାଣନ୍ତି – କେବଳ ଏଇ ଠେକାପାଇଁ ରଦରଫୋର୍ଡଙ୍କ ପରି ବୈଜ୍ଞାନିକ ଏତେ ଲୋକଙ୍କ ଭିତରେ ମୋତେ ଚିହ୍ନି ପାରିଲେ ଓ ଡାକି ପାଖରେ ବସାଇଲେ ।"

ବୈଜ୍ଞାନିକ ହେଲମହୋଲସ କହିଥିଲେ – ବଡଲୋକଙ୍କ ସହ ମିଶିଲେ ମନରୁ ସଂକୀର୍ଣ୍ଣତା ଓ ଅହମିକା ଦୂର ହୋଇଯାଏ, ନ୍ୟୂନମନୋଭାବ ଘୁଞ୍ଚିଯାଇ ବ୍ୟକ୍ତିତ୍ୱକୁ ବିକଶିତ କରାଏ । ପୃଥିବୀର ସେହି ବିଖ୍ୟାତ ବୈଜ୍ଞାନିକମାନଙ୍କ ଗହଣରେ ଆସିବା ଫଳରେ ସେ ପରେ ଦ୍ୱିଗୁଣ ଉତ୍ସାହରେ ଗବେଷଣା କରିବାକୁ ଲାଗିଲେ । ସେ ସେଠାରେ କେବଳ ବକ୍ତୃତା ଶୁଣୁ ନଥିଲେ, ଆଲୋକ ଓ ଧ୍ୱନିବିଜ୍ଞାନରେ କରିଥିବା ଗବେଷଣା ଉପରେ ଭାଷଣ ଦେଇଥିଲେ । ତାଙ୍କ ଭାଷଣର ଚମତ୍କାରିତାରେ ସେଠା ବୈଜ୍ଞାନିକମାନେ ମୁଗ୍ଧ ହୋଇ ଯାଇଥିଲେ ।

ବିଲାତରୁ ଫେରିଲାବେଳେ ଜଳଜାହାଜରେ ସେ ତାଙ୍କର ବୈଜ୍ଞାନିକ ପରୀକ୍ଷା ଆରମ୍ଭ କରିଦେଲେ । ର୍ୟାଲେ କହିଥିଲେ ନୀଳ ଆକାଶ ସମୁଦ୍ରରୁ ପ୍ରତିଫଳିତ

ହୋଇ ସାଗରକୁ ନୀଳ କରିଥାଏ । ବିଲାତରୁ ଆଣିଥିବା ନିକଲ ପ୍ରିଜମ୍ ଦ୍ୱାରା ସେ ପ୍ରତିଫଳିତ ଆଲୋକକୁ ବାଦ୍ କରିଦେଲେ । ତଥାପି ସାଗର ନୀଳ ଦିଶିଲା ।

ସେଇ ଜାହାଜରେ ସେ ଗବେଷଣାର ଫଳାଫଳ ଲେଖି ବିଲାତକୁ ଛପାଇବାକୁ ପଠାଇଲେ । ଏହି ଗବେଷଣା ପତ୍ରର ନାଁ ଥିଲା "ଜଳ ଅଣୁର ଆଲୋକ ବିଚ୍ଛୁରଣ ଓ ସାଗରର ବର୍ଣ୍ଣ ।" ଆଗରୁ ଆଇନଷ୍ଟାଇନ୍ ଓ ସ୍ମୋଲୋକୋଭସ୍କି ଯେଉଁ ସୂତ୍ର ବାହାର କରିଥିଲେ ସେହି ସୂତ୍ର ସାହାଯ୍ୟରେ ସେ ଆଲୋକ ବିଚ୍ଛୁରଣ କଳନା କରିଥିଲେ । ଏଥିରୁ ହିସାବ କରି ସେ କହିଥିଲେ ଯେ ୫୦ ମିଟର ଗଭୀର ଜଳ ଆଲୋକ ବିଚ୍ଛୁରଣ କରି ଆକାଶ ପରି ନୀଳ ଦିଶେ ।

ଲୋକେ ଅଧିକ ପାଠ ପଢ଼ିବାକୁ ବା ଗବେଷଣା ଶିଖିବାକୁ ବିଲାତ ଯାଆନ୍ତି । ବର୍ଷ ବର୍ଷ ଧରି ସେଠାରେ ରହି ଯାହା ନ ଶିଖନ୍ତି ରାମନ ମାତ୍ର କେତେ ମାସରେ ତାହା ଶିଖିଥିଲେ । ତାହା ପୁଣି ବିଲାତରେ ନୁହେଁ, ବିଲାତ ଯାଆସ କରିବା ବାଟରେ । ଭୂମଧ୍ୟସାଗରର ନୀଳବର୍ଣ୍ଣ ଦର୍ଶନରେ ମୁଗ୍ଧ ହୋଇ ସେ ଗବେଷଣାରେ ମାତିଗଲେ ।

ତାଙ୍କ ଗବେଷଣାର ମୋଡ ବଦଳିଗଲା । ସେ ଅନ୍ୟ କୁଆଡେ ନମାତି କେବଳ ଆଲୋକ ବିଚ୍ଛୁରଣ ଉପରେ ପରୀକ୍ଷା କରିବାକୁ ଲାଗିଲେ । ୧୯୨୨ରେ "ଆଲୋକର ଆଣବିକ ପ୍ରକୀର୍ଣ୍ଣନ" ନାମକ ପୁସ୍ତିକାଟିଏ ପ୍ରକାଶ କଲେ । ଯୋଜନା କରି ବିଭିନ୍ନ ତରଳ, ଦ୍ରବଣ ଓ କଠିନରେ ଆଲୋକ ବିଚ୍ଛୁରଣ କିପରି ଘଟୁଛି ପରୀକ୍ଷା କଲେ । ତାହା ହିଁ ତାଙ୍କୁ ନୋବେଲ ପୁରସ୍କାର ପାଇବା ପାଇଁ ଆଗେଇ ନେଲା ।

## ତାଙ୍କ ଗବେଷଣା

ପାଠ ପଢ଼ିଲା ବେଳୁ ରାମନ କିପରି ନୂଆ କ'ଣ ବାହାର କରିବେ କେବଳ ସେଇଥିରେ ମାତୁଥିଲେ । ସେଥିପାଇଁ ପାଠବହି କେତେଖଣ୍ଡ ପଢ଼ି ସେ ସନ୍ତୁଷ୍ଟ ହେଉ ନଥିଲେ । ଶ୍ରେଣୀଗୃହରେ କେବଳ ବକ୍ତୃତା ଶୁଣିବାରେ ତାଙ୍କ ମନ ମାନୁ ନଥିଲା । କିଲୋମିଟର କିଲୋମିଟର ସାଇକେଲ ଚଳାଇ ସେ ଲାଇବ୍ରେରୀକୁ ଯାଉଥିଲେ । ବଡ ବଡ ବୈଜ୍ଞାନିକମାନଙ୍କର ବହି ସବୁ ଦରାଣ୍ଡୁ ଥିଲେ ।

କିନ୍ତୁ ଗୋଟିଏ କଥା ସେ ସବୁବେଳେ ମନେ ରଖିଥିଲେ ଓ ଅନ୍ୟମାନଙ୍କୁ କହୁଥିଲେ "ଗବେଷଣା ବା କିଛି ନୂଆକଥାର ଆବିଷ୍କାର କେବଳ ମନୁଷ୍ୟର ମନରୁ ବାହାରେ, ବହିରୁ ନୁହେଁ ।" ଯେଉଁମାନେ ଗହୀରେଇ ଚିନ୍ତା ନକରନ୍ତି, କେବଳ ଅନ୍ୟର ଲେଖା ବସି ପଢ଼ନ୍ତି, ସାରାଜୀବନ ସେମିତି ପଢୁଥାନ୍ତି ଓ ଅନ୍ୟର କଥାକୁ କହି ହେଉଥାନ୍ତି । ତାଙ୍କ କଥାରେ ବା ଲେଖାରେ କିଛି ନୂଆ ନଥାଏ ।

ଏଭଳି ଯାହାର ମନୋଭାବ ସେ ସରକାରୀ ଦପ୍ତରରେ ବାନ୍ଧି ହୋଇ ଖାଲି ଫାଇଲ ପଢ଼ି ପଢ଼ି ରହିଥାନ୍ତେ କିପରି ? ସେ ଆସି ଆସୋସିଏସନର ଆଶୁବାବୁଙ୍କ

ହାବୁଡରେ ପଡିଲେ, ବଙ୍ଗବ୍ୟାଘ୍ର ଆଶୁତୋଷଙ୍କ ଖାପଚରୁ ଖସି ପାରିଲେ ନାହିଁ । ବ୍ୟକ୍ତିତ୍ୱର ଇନ୍ଦ୍ରଜାଲ ଅନ୍ୟ ବ୍ୟକ୍ତିକୁ ଛନ୍ଦି ରଖେ । "ମନ୍ଦୁ ଖୋଜୁଥିଲା ଯାହା, ବୈଦ୍ୟ ବତାଇଲା ତାହା ।"

ଆଶୁତୋଷ ଜାଲ ପକାଇ ରାମନଙ୍କୁ ଅଟକାଇ ନଥିଲେ, ରାମନ ନିଜେ ଇଚ୍ଛାକରି ତାଙ୍କ ଜାଲ ଭିତରକୁ ଟାଣି ହୋଇ ଆସିଥିଲେ । ତାଙ୍କ ମନକୁ ଯାହା ଆସୁଥିଲା ସେ ତାକୁ ପରୀକ୍ଷା କରି ନୂଆ ରୂପ ଦେଉଥିଲେ । ତେଣୁ ନିଜକୁ ସେ ଅଧ୍ୟାପକ ନକହି ଜଣେ ଗବେଷକ ବୋଲି କହିବାକୁ ପସନ୍ଦ କରୁଥିଲେ ।

ବିଲାତରୁ ଫେରି ସେ ଆଲୋକ ବିଚ୍ଛୁରଣ ପରୀକ୍ଷାରେ ମାତିଗଲେ । ଆଗରୁ ସେ ଏଣୁତେଣୁ ଯାହା ପାଉଥିଲେ ତାକୁ ଖୋଳତାଡ କରିବାରେ ମାତି ଯାଉଥିଲେ ବିଲାତରୁ ଫେରିଲା ପରେ ସେ ଗୋଟିଏ ବିଷୟକୁ ଧରି ବସିଲେ । ସେହି ବିଷୟର ସବୁ ଦିଗକୁ ସେ ଟିକିନିଖି ଭାବେ ପରୀକ୍ଷା ନକରି ଛାଡିଲେ ନାହିଁ ।

ସେତିକିବେଳକୁ ଜଣେ ମେଧାବୀ ଯୁବ-ଗବେଷକ ଆସି ରାମନଙ୍କୁ ଭେଟିଲେ । ତାଙ୍କ ନାମ କେ (କଲପଥି) ଆର (ରାମକ୍ରିଷ୍ଣା) ରାମନାଥନ । ରାମନଙ୍କଠାରୁ ବୟସରେ ୫ ବର୍ଷ ସାନ । ସେ ୭ ବର୍ଷ ଡେମୋନ୍‌ଷ୍ଟ୍ରେଟର ହୋଇ ସାରିଥିଲେ । ଗ୍ରୀଷ୍ମପ୍ରଧାନ ଦେଶରେ ଝଡବୃଷ୍ଟି ବେଳେ ବଜ୍ରପାତ କିପରି ହୁଏ ତାହା ଉପରେ ଗୋଟିଏ ଗବେଷଣାପତ୍ର ମଧ୍ୟ ଲେଖି ସାରିଥିଲେ । ୧୯୨୧ରେ ସେ ରାମନଙ୍କୁ ଭେଟି କଲିକତାରେ ଗବେଷଣା କରିବାକୁ କହିଲେ । ରାମନ ବିଲାତରୁ ଫେରି ଆଲୋକ ବିଚ୍ଛୁରଣ ଉପରେ କିପରି ପରୀକ୍ଷା କରିବେ ବ୍ୟସ୍ତ ହେଉଥିଲେ । ଭଲ କାମଟିଏ ହେବାକୁ ଥିଲେ ସୁଯୋଗ ଏମିତି ଚଳେ ଆସେ ।

ଫ୍ଲାସ୍କରେ ବିଶୁଦ୍ଧ ଜଳ ନିଆଗଲା । ସୂର୍ଯ୍ୟକିରଣକୁ ବାଇଗଣୀ କାଚ ମଧ୍ୟ ଦେଇ ଜଳ ଭିତରକୁ ପକାଗଲା । ଏକ ସମକୋଣରେ ଜଳରୁ ବିଚ୍ଛୁରିତ ହେଉଥିବା ଆଲୋକକୁ ଏକ ସବୁଜ କାଚ ଭିତର ଦେଇ ଲକ୍ଷ୍ୟ କରାଗଲା । ଜଳରେ ବାଇଗଣୀ ଆଲୁଅ ପଡୁଥିଲା । ବିଚ୍ଛୁରଣରେ ସେହି ବାଇଗଣୀ ବର୍ଣ୍ଣ ଆଲୋକ ବାହାରୁଥିଲେ ତାକୁ ସବୁଜ କାଚରେ ଦେଖି ହୋଇ ନଥାନ୍ତା । କାରଣ ବାଇଗଣୀ ଆଲୋକକୁ ସବୁଜ କାଚ ପୂରା ଶୋଷି ନିଏ । କିନ୍ତୁ ପରୀକ୍ଷାରେ ତାହା ହେଲା ନାହିଁ ।

ଖୁବ୍ ଅଳ୍ପ ଆଲୁଅ ସବୁଜ କାଚରେ ଦେଖାଗଲା । ପ୍ରଥମେ ସେମାନେ ସନ୍ଦେହ କଲେ ଜଳରେ କିଛି ମଳି ବା ଖାଦ ରହୁଥିବାରୁ ଏପରି ହେଉଛି । ତେଣୁ ଜଳକୁ ବାରମ୍ବାର ପାତନ (ବାଷ୍ପ କରି ପୁଣି ଜଳ କରିବା) କରାଗଲା । କିନ୍ତୁ ଯେଉଁ କଥାକୁ ସେଇକଥା । କିଛି ଆଲୋକ ସବୁଜ କାଚରୁ ବାହାରିଲା । ସେମାନେ ସିଦ୍ଧାନ୍ତ କଲେ ବାହାରୁଥିବା ଆଲୁଅର ବର୍ଣ୍ଣ ବଦଳି ଯାଉଛି । ସେହି ବର୍ଣ୍ଣ ମୂଳ ବାଇଗଣୀ

ବର୍ଣ୍ଣଠାରୁ ଅଲଗା ହେଉଛି । ସେମାନେ ଏହାକୁ ଏକ ଦୁର୍ବଳ ପ୍ରତିଦୀପ୍ତ ଆଲୋକ ମନେ କରି ତାଙ୍କ ଗବେଷଣା ପତ୍ର ଛପାଇଲେ ।

ଏଥିପାଇଁ ରାମନ କଲିକତାରେ ଦୋକାନକୁ ଦୋକାନ ବୁଲି ଭଙ୍ଗା ରଙ୍ଗୀନ କାଚଖଣ୍ଡମାନ ସଂଗ୍ରହ କରିଥିଲେ । ଆଗେ କଲିକତାର କୋଠାଘର ଝରକାରେ ରଙ୍ଗୀନ କାଚ ଲାଗୁଥିଲା । ସେଗୁଡ଼ିକ ଭାଙ୍ଗିଗଲେ ବୁଲା ଗୋଟାଳିମାନେ ତାକୁ ନେଇ ଦୋକାନରେ ବିକି ଦେଉଥିଲେ । ରାମନଙ୍କ ତାଙ୍କ ସହକର୍ମୀଙ୍କ ସଙ୍ଗେ ଖୋଜାଖୋଜି କରି ବିଭିନ୍ନ ବର୍ଣ୍ଣର କାଚ ପଟା ସଂଗ୍ରହ କରୁଥିଲେ । ସେଥିରୁ ଯେଉଁ ଦୁଇଟି ଭିନ୍ନ ବର୍ଣ୍ଣର କାଚ ଖଣ୍ଡ ମିଳି ସୂର୍ଯ୍ୟାଲୋକକୁ ପୂରା ଅଟକାଇ ଦେଉଥିଲା ସେଇ ଦୁଇଖଣ୍ଡକୁ ସେ ପରସ୍ପରର ଅନୁପୂରକ କାଚ ମନେ କରୁଥିଲେ । ଏହିପରି ଶସ୍ତା କାଚ ଗୋଟେଇ ସେ ରଙ୍ଗଛଣା କାଚ ତିଆରି କରୁଥିଲେ । ଯାହା ଯେଉଁଠି ମିଳୁଛି ତାକୁ ନେଇ ସେ ଗବେଷଣା ପରୀକ୍ଷା ଚଳେଇବାକୁ ପସନ୍ଦ କରୁଥିଲେ ।

ଏହି ପ୍ରକାରେ ଭିନ୍ନ ଭିନ୍ନ କାଚ ପରୀକ୍ଷା କରି ସେ ଦେଖିଲେ ଖଣ୍ଡେ ବାଇଗଣୀ କାଚ ଓ ଆଉ ଖଣ୍ଡେ ସବୁଜ କାଚ ପରସ୍ପରର ଅନୁପୂରକ । ଅର୍ଥାତ୍ ବାଇଗଣୀ କାଚ ମଧ୍ୟ ଦେଇ ଆସୁଥିବା ସୂର୍ଯ୍ୟାଲୋକକୁ ସବୁଜ କାଚ ପୂରା ଅଟକାଇ ଦେଉଛି । ତେଣୁ ସେ ବାଇଗଣୀ କାଚ ଦେଇ ଆସିଥିବା ସୂର୍ଯ୍ୟାଲୋକ ଜଳ ଭିତରକୁ ପକାଇଲେ । ଜଳରୁ ବିଚ୍ଛୁରିତ ଆଲୋକକୁ ସବୁଜ କାଚ ଲଗାଇ ଦେଖିଲେ । ଯଦି ବିଚ୍ଛୁରିତ ଆଲୋକର ବର୍ଣ୍ଣ ସମାନ ହୋଇଥାନ୍ତା ତାହାହେଲେ ତାହା ଦିଶି ନଥାନ୍ତା । କିନ୍ତୁ ତାହା ଦିଶୁଥିବାରୁ ସେ ଧରିନେଲେ ଯେ ବିଚ୍ଛୁରିତ ଆଲୋକରେ ଜଳ ନୂଆ ବର୍ଣ୍ଣ ସୃଷ୍ଟି କରୁଛି ।

୧୯୨୨ ବେଳକୁ ଯୁକ୍ତରାଷ୍ଟ୍ର ଆମେରିକାର ବୈଜ୍ଞାନିକ କମ୍ପଟନ ଏକ୍ସରେ ସମ୍ପର୍କରେ ଏହିଭଳି ଏକ ଆବିଷ୍କାର କରିଥିଲେ । ଏକବର୍ଣ୍ଣୀ ରଞ୍ଜନରଶ୍ମିର ପଦାର୍ଥରୁ ବିଚ୍ଛୁରିତ ହୋଇ ତା'ର ବର୍ଣ୍ଣ ବଦଳାଏ । ରଞ୍ଜନରଶ୍ମିର ଏହି ବିଚ୍ଛୁରଣ ପଦାର୍ଥରେ ଥିବା ମୁକ୍ତ ଇଲେକ୍ଟ୍ରନ ଘଟାଇଥାଏ । ରଞ୍ଜନ ରଶ୍ମି କଣିକା (ଫୋଟନ) ଇଲେକ୍ଟ୍ରନ ସଙ୍ଗେ ଧକ୍କା ଖାଏ । ଫଳରେ ତାର କିଛି ଶକ୍ତି ଇଲେକ୍ଟ୍ରନ ପାଏ । ରଞ୍ଜନରଶ୍ମି କଣିକା ବା ଫୋଟନର ଶକ୍ତି କମିଯାଏ । ତେଣୁ ରଞ୍ଜନରଶ୍ମିର ବର୍ଣ୍ଣ ବଦଳେ । ଜଳ ବିଚ୍ଛୁରଣରେ ଏହିପରି କିଛି ଘଟୁଛି ବୋଲି ରାମନ ସନ୍ଦେହ କଲେ ।

୧୯୨୪ରେ ରାମନ କ୍ୟାନାଡା ଯାଇଥିଲେ । ବ୍ରିଟିଶ୍ ସରକାରଙ୍କ ତରଫରୁ ସେ ନିମନ୍ତ୍ରିତ ହୋଇ ଥାନ୍ତି । ଟରଣ୍ଟୋଠାରେ ବ୍ରିଟିଶ୍ ବୈଜ୍ଞାନିକମାନଙ୍କର ସମ୍ମିଳନୀ ହେଉଥାଏ । କଂପଟ ଏକ୍ସରେ ସମ୍ପର୍କରେ ଯେଉଁ ସିଦ୍ଧାନ୍ତ ଦେଇଥାନ୍ତି ଅନ୍ୟ ବୈଜ୍ଞାନିକମାନେ ପରୀକ୍ଷା କରି ସେପରି ଫଳ ପାଉ ନଥାନ୍ତି । ସେଥିନେଇ ତୁମୂଳ

ବାଦାନୁବାଦ ହେଉଥାଏ । ରାମନ ସେଠାରେ ଉପସ୍ଥିତ ଥାଇ ଏହା ଲକ୍ଷ୍ୟ କରୁଥିଲେ ଏବଂ କଂପଟନଙ୍କୁ କହିଥିଲେ "ଆପଣଙ୍କ ଯୁକ୍ତି ଠିକ୍, କିନ୍ତୁ ସତ୍ୟ ଏପର୍ଯ୍ୟନ୍ତ ଆପଣଙ୍କ ଅଭିଯାରକୁ ଆସି ନାହିଁ ।" ଏପରି କହିବାର କାରଣ ହେଲା ସେପର୍ଯ୍ୟନ୍ତ କଂପଟନଙ୍କ ତାତ୍ତ୍ୱିକ ଘୋଷଣା ପରୀକ୍ଷାଗାରରେ ଅନ୍ୟମାନଙ୍କୁ ସନ୍ତୁଷ୍ଟ କରି ନ ଥିଲା ।

କଂପଟନଙ୍କ ସିଦ୍ଧାନ୍ତ ସତ ହେଲା । ଅନ୍ୟମାନେ ପରୀକ୍ଷାଗାରରେ ତାଙ୍କ ଘୋଷଣା ମୁତାବକ ଫଳ ପାଇଲେ । ୧୯୨୭ ମସିହାରେ କଂପଟନ ନୋବେଲ ପୁରସ୍କାର ପାଇଲେ । ୧୯୨୪ରେ ରାମନ କ୍ୟାନାଡା ଗସ୍ତରୁ ଫେରି ଦ୍ୱିଗୁଣିତ ଉତ୍ସାହରେ ତାଙ୍କ ଆଲୋକ ବିଚ୍ଛୁରଣ ପରୀକ୍ଷା ଚଳାଇଲେ । ବୋଧହୁଏ ସେତେବେଳକୁ ସେ ମନେମନେ ଭାବି ନେଇଥିଲେ ଯେ କଂପଟନ ଏକ୍ସରେ ସମ୍ବନ୍ଧରେ ଯାହା କରିଛନ୍ତି ସେ ଦିନେ ଆଲୋକ ସମ୍ବନ୍ଧରେ ତାହା ପ୍ରମାଣ କରିବେ । କିନ୍ତୁ ଏଥିପାଇଁ ତାଙ୍କ ପରୀକ୍ଷାକୁ ଅଧିକ ପରିମାର୍ଜିତ କରିବାକୁ ହେବ ।

## ରାମନ ସିଦ୍ଧାନ୍ତ

ଆଲୋକ ବିଚ୍ଛୁରଣ ସମ୍ବନ୍ଧରେ ପରୀକ୍ଷା କରି ରାମନ ଯେଉଁ ନୂଆ ସିଦ୍ଧାନ୍ତ ପ୍ରମାଣ କଲେ ତାକୁ 'ରାମନ ସିଦ୍ଧାନ୍ତ' କୁହାଗଲା । ଜର୍ମାନ ବୈଜ୍ଞାନିକ ପି. ପ୍ରିଙ୍ଗସେମ ଓ ଫ୍ରାନ୍ସର ବୈଜ୍ଞାନିକ ଜେ. କାବାନେସ ଏବଂ ପି. ଡରେ ରାମନଙ୍କ ଆବିଷ୍କାରକୁ ପ୍ରଥମେ 'ରାମନଙ୍କ ସିଦ୍ଧାନ୍ତ' ବୋଲି ଲେଖିଲେ । ରାମନଙ୍କ ଛାତ୍ର ଏଲ.ଏ. ରାମଦାସ ପ୍ରଥମେ ଭାରତରୁ ଏହାକୁ ରାମନ ସିଦ୍ଧାନ୍ତ ବୋଲି ଉଲ୍ଲେଖ କଲେ । ଏହା ହେଉଛି ୧୯୨୮ ମସିହା ଘଟଣା ।

ପ୍ରଥମେ ୧୯୨୧ରେ ରାମନାଥନ ଓ ରାମନ ମିଳି ଜଳ ବିଚ୍ଛୁରଣରେ ଯେଉଁ "କ୍ଷୀଣ ପ୍ରତିଦୀପ୍ତ ଆଲୋକ"ର ସନ୍ଧାନ ପାଇଲେ ତାହା ହିଁ ଶେଷରେ ରାମନସିଦ୍ଧାନ୍ତରେ ପରିଣତ ହେଲା । କିନ୍ତୁ ସେତେବେଳେ ସେମାନେ ଏହାର ଉପାଦେୟତା ଅନୁଭବ କରି ନଥିଲେ । ଗୁଡ଼ିଏ ତରଳ ପଦାର୍ଥ, ଗ୍ୟାସ ଓ ବାଷ୍ପର ବିଚ୍ଛୁରଣରେ ଏହି ନୂଆ ବର୍ଣ୍ଣର ଆଲୋକ ଜାତ ହେଉଥିଲା, ତଥାପି ସେମାନେ ତାକୁ ନୂଆ ଆଲୋକ ବୋଲି ଗୁରୁତ୍ୱ ଦେଇ ବିଚାର କରୁ ନଥିଲେ । ରାମନାଥନ ଭାବୁଥିଲେ ଜଳରେ ବା ବିଚ୍ଛୁରଣକାରୀ ତରଳରେ ଖାଦ ହେତୁ ଏ ବର୍ଣ୍ଣ ପରିବର୍ତ୍ତନ ହେଉଛି ।

ଏ ବିଷୟରେ ୨/୩ ଟି ଗବେଷଣା ପତ୍ର ଛପାଇ ଥିଲେ ମଧ୍ୟ ରାମନାଥନ ଅନ୍ୟ ଆଡେ ମନ ଦେଇଥିଲେ । ଫଳରେ ରାମନ ତାଙ୍କର ଅନ୍ୟତମ କୃତୀ ସହକର୍ମୀ କେ.ଏସ. କ୍ରିଷ୍ଣାନଙ୍କୁ ଆଲୋକ ବିଚ୍ଛୁରଣ ପରୀକ୍ଷା ପାଇଁ ଉତ୍ସାହିତ କରିଥିଲେ । ୧୯୨୭ ମସିହା ଶୀତଋତୁରେ ରାମନ ଛୁଟି ନେଇ ଆନ୍ଧ୍ରର ୱାଲଟିୟରକୁ ଯାଇଥିଲେ ।

ତାଙ୍କ ମନରେ କଂପଟନଙ୍କ ବିଚ୍ଛୁରଣ କଥା ଲାଖି ରହିଥାଏ । ସେ ଗତାନୁଗତିକ ପ୍ରଣାଳୀରେ ତାକୁ ବୁଝାଇବାକୁ ଏକ ସୂତ୍ର ବାହାର କଲେ । ସେହି ସୂତ୍ର ସାହାଯ୍ୟରେ ସେ ତାଙ୍କ ବିଚ୍ଛୁରଣ ପରୀକ୍ଷାର କ୍ଷୀଣ ପ୍ରତିଦୀପ୍ତ ଆଲୋକକୁ ବୁଝାଇବାକୁ ଚେଷ୍ଟାକଲେ ।

ଛୁଟିରୁ ଫେରି ସେ ତାଙ୍କର ବିଚ୍ଛୁରଣ ପରୀକ୍ଷା ଖୁବ୍ ଜୋରସୋରରେ ଆରମ୍ଭ କଲେ । ଏଥିପାଇଁ ସେ ଭେଙ୍କଟଶ୍ୱରନ୍ ଓ କ୍ରିଷ୍ଣନଙ୍କୁ ଦାୟିତ୍ୱ ଦେଲେ । ୧୯୨୮ ଜାନୁୟାରୀରେ ଭେଙ୍କଟଶ୍ୱରନ୍ ଗ୍ଲିସେରିନ ନେଇ ତା ମଧ୍ୟକୁ ନୀଳ ଆଲୋକ ପକାଇଲେ, ବିଚ୍ଛୁରିତ ଆଲୋକ ନୀଳ ନ ହୋଇ ସବୁଜ ହେଲା । ଏବେ ରାମନ ଓ କ୍ରିଷ୍ଣନ୍ ସୂକ୍ଷ୍ମତର ଉପକରଣ ନେଇ କ୍ଷୀଣ ପ୍ରତିଦୀପ୍ତ ଆଲୋକ ବିଚ୍ଛୁରଣ ଲକ୍ଷ୍ୟ କଲେ । ରାମନାଥନ୍ଙ୍କ ପର୍ଯ୍ୟବେକ୍ଷଣ ଠିକ୍ ଥିଲା ବୋଲି ସେମାନେ ୧୯୨୮ ଫେବୃୟାରୀ ୭ରେ ନିଶ୍ଚିତ ହେଲେ । ଏହି ଫଳାଫଳ କଂପଟନ ସିଦ୍ଧାନ୍ତ ସଦୃଶ ବୋଲି ସେମାନେ ମତ ଦେଲେ ।

ଏହାକୁ ଏକ ଗବେଷଣାପତ୍ର ରୂପେ ସେମାନେ ଫେବୃୟାରୀ ୧୬ରେ ଲଣ୍ଡନ ପତ୍ରିକାକୁ ଛପାଇବାକୁ ପଠାଇଲେ । ପ୍ରକୃତରେ ବିଚ୍ଛୁରଣରେ କ'ଣ ହେଉଛି ରାମନ ସେ ପର୍ଯ୍ୟନ୍ତ ସ୍ଥିର ସିଦ୍ଧାନ୍ତରେ ପହଞ୍ଚି ନଥାନ୍ତି । ତାପରେ ସେ ନିଜେ ବେଞ୍ଜିନ ତରଳ ନେଇ ପରୀକ୍ଷା କଲେ । ଫେବୃୟାରୀ ୨୭ ପର୍ଯ୍ୟନ୍ତ ସୂର୍ଯ୍ୟକିରଣଦ୍ୱାରା ପରୀକ୍ଷା କରାଯାଉଥିଲା । ତା' ପରଦିନ ଫେବୃୟାରୀ ୨୮ରେ ସେ ସୂର୍ଯ୍ୟାଲୋକ ବଦଳରେ ପାରଦ ଆଲୋକ ନେଲେ । ଏଥିପାଇ ପାରଦ ଆଲୋକର ଯେଉଁ ବର୍ଣ୍ଣରେଖା ବଛା ହେଲା ତା'ର ତରଙ୍ଗ ଦୈର୍ଘ୍ୟ ଥିଲା ୪୩୫୮ ଆଙ୍ଗଷ୍ଟ୍ରମ୍ (ଆଙ୍ଗଷ୍ଟ୍ରମ ଦୈର୍ଘ୍ୟର ଏକକ, ଏହା ଅତି କ୍ଷୁଦ୍ର, ୧ ସେଣ୍ଟିମିଟରର ୧୦ କୋଟି ଭାଗରୁ ଭାଗେ ମାତ୍ର) । ବୋତଲେ ବେଞ୍ଜିନ୍ ଉପରେ ତୀବ୍ର ପାରଦ ଆଲୋକର ଏକ ବର୍ଣ୍ଣ ବାଛି ତାକୁ ଲେନ୍ସ ଦ୍ୱାରା ପକାଗଲା । ଗୋଟିଏ ବର୍ଣ୍ଣବୀକ୍ଷଣ ସାହାଯ୍ୟରେ ସେମାନେ ବିଚ୍ଛୁରିତ ଆଲୋକକୁ ଲକ୍ଷ୍ୟକଲେ ।

ଏଥିରେ ସେମାନେ ଯାହା ଦେଖିଲେ ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେମାନେ ଗୋଟିଏ ନୂଆ ବର୍ଣ୍ଣରେଖା ବଦଳରେ ଦୁଇଟି ବର୍ଣ୍ଣରେଖା ଦେଖିଲେ । ଗୋଟିଏ ବର୍ଣ୍ଣରେଖାର ତରଙ୍ଗ ଦୈର୍ଘ୍ୟ ବଢ଼ିଛି ଓ ଅନ୍ୟଟିର କମିଛି । ରାମନ ଓ କ୍ରିଷ୍ଣନ ଉଭୟ ମିଶି ତାହାର ଫଟ ଉଠାଇଲେ । ରାମନବର୍ଣ୍ଣାଳୀର ଏହା ପ୍ରଥମ ଫଟ (ଏଥିପାଇଁ ହିଲଗର କମ୍ପାନୀର ବେବିକ୍ୱାର୍ଜ ସ୍ପେକ୍ଟ୍ରୋଗ୍ରାଫ୍ ଉପକରଣ ବ୍ୟବହୃତ ହୋଇଥିଲା) ।

ରାମନ କେବଳ ନିଜ ନାମରେ ଏହାକୁ ନେଚରରେ ଛପାଇବାକୁ ପଠାଇଲେ । ତାହା ମାର୍ଚ୍ଚ ୮ରେ ପଠାହୋଇଥିଲା । ନେଚରର ପରାମର୍ଶଦାତାମାନେ ଏହାକୁ ନ

ଛପାଇବା ପାଇଁ ମତ ଦେଇଥିଲେ । କିନ୍ତୁ ସମ୍ପାଦକ ସାର୍ ରିଚାର୍ଡ ଗ୍ରିଗରୀ ନିଜେ ସମସ୍ତ ଦାୟିତ୍ୱ ନେଇ ଏହାକୁ ଛପାଇଥିଲେ । ଯଦିଓ ୬୦ଟି ତରଳରେ ପରୀକ୍ଷା ହୋଇଥିଲା ଲେଖାଟି ଅତି ସଂକ୍ଷିପ୍ତ ଥିଲା, ମାତ୍ର ଅଧପୃଷ୍ଠାଏ । ଏହାହିଁ ରାମନଙ୍କୁ ନୋବେଲ ପୁରସ୍କାର ପାଇବାରେ ସାହାଯ୍ୟ କରିଥିଲା ।




ରାମନ ସିଦ୍ଧାନ୍ତ ପରୀକ୍ଷାର ଉପକରଣ

ରାମନ ଓ କ୍ରିଷ୍ଣନଙ୍କ ପ୍ରଥମ ପତ୍ରଟି ମାର୍ଚ୍ଚ ୩୧, ୧୯୨୮ରେ ନେଚରରେ ଛପା ହୋଇଥିଲା । ମାର୍ଚ୍ଚ ୮ରେ ପଠା ହୋଇଥିବା ରାମନଙ୍କ ପତ୍ରଟି ସେଇବର୍ଷ ଏପ୍ରିଲରେ ନେଚରରେ ଛପା ହୋଇଥିଲା । ରାମନ ତାଙ୍କ ନୂଆ ବିକିରଣର ଆବିଷ୍କାର କଥା ୧୯୨୮ ଫେବୃୟାରୀ ୨୮ରେ ସର୍ବସାଧାରଣରେ ଘୋଷଣା କରିଥିଲେ । ଏହା କିପରି ଘଟୁଛି ସେ ୧୯୨୮ ମାର୍ଚ୍ଚ ୧୬ରେ ବାଙ୍ଗାଲୋର ଠାରେ ତାଙ୍କ ବକ୍ତୃତାରେ ଘୋଷଣା କରିଥିଲେ ।

ବାଙ୍ଗାଲୋରଠାରେ ହେଉଥିବା ଦକ୍ଷିଣ ଭାରତୀୟ ବିଜ୍ଞାନ ସଂଘରେ ୧୯୨୮ ମାର୍ଚ୍ଚ ୧୬ରେ ରାମନ ଯେଉଁ ଭାଷଣ ଦେଇଥିଲେ ତାର ଶିରୋନାମା ଥିଲା "ଏକ ନୂତନ ବିକିରଣ" । କିପରି ଏହି ବିକିରଣ ଆବିଷ୍କାର କରି ପାରିଲେ ସେଇ ବକ୍ତୃତାରେ ସେ ଚିକିନିଖି ଭାବେ ତାହା ବର୍ଣ୍ଣନା କଲେ । ଏହି ନୂତନ ବିକିରଣ କ'ଣ ତାହା

ନିଶ୍ଚୟ ସେ ଶ୍ରୋତାମାନଙ୍କୁ ବୁଝାଇ ଥିଲେ ।

ବୋଧହୁଏ ବୁଝାଇଲାବେଳେ ରାମନ ଉପଲବ୍ଧି କରିଥିଲେ ଯେ ତାଙ୍କ ଆବିଷ୍କାର କଂପଟନ ସିଦ୍ଧାନ୍ତ ସଦୃଶ ନୁହେଁ, ଭିନ୍ନ ଧରଣର । ପରବର୍ତ୍ତୀ ଗବେଷଣା ପତ୍ରରେ ରାମନ ସିଦ୍ଧାନ୍ତ କଂପଟନ ସିଦ୍ଧାନ୍ତଠାରୁ କିପରି ଭିନ୍ନ ତାହା ପ୍ରାଞ୍ଜଳଭାବେ ବୁଝାଇ ଦିଆଯାଇଥିଲା । ରାମନଙ୍କ ପ୍ରିୟ ଛାତ୍ର ରାମଦାସ ତାଙ୍କ ଗବେଷଣା ପତ୍ରରେ ରାମନ ସିଦ୍ଧାନ୍ତକୁ ପରିବର୍ତ୍ତିତ ବିଚ୍ଛୁରଣ ବୋଲି କହୁଥିଲେ । ଏପରି କାହିଁକି କହୁଥିଲେ ପରେ ତାହା ବୁଝାଇ ଦିଆଯିବ ।

ବାଙ୍ଗାଲୋରରୁ ଫେରି ରାମନ ତାଙ୍କ ଭାଷଣକୁ ରାତାରାତି କଲିକତାରେ ଛପାଇଲେ । ସେହିଦିନ ସେଥିରୁ ଦୁଇହଜାର ଖଣ୍ଡ ପୃଥିବୀର ବୈଜ୍ଞାନିକମାନଙ୍କ ନିକଟକୁ ସଙ୍ଗେ ସଙ୍ଗେ ଡାକରେ ପଠାଇଲେ । ରାମନ ତାଙ୍କ ଗବେଷଣା ପାଇଁ ସମୟ ନେଉଥିଲେ । କୌଣସି ଏକ ସିଦ୍ଧାନ୍ତରେ ପହଞ୍ଚିବା ପୂର୍ବରୁ ତାକୁ ବିଭିନ୍ନ ଦିଗରୁ ପରୀକ୍ଷା କରୁଥିଲେ । ରାତିଦିନ ସେବିଷୟରେ ଭାବୁଥିଲେ । ଅନ୍ୟମାନଙ୍କୁ ନେଇ ଆଲୋଚନା କରୁଥିଲେ ।

କିନ୍ତୁ ଏକ ସନ୍ତୋଷଜନକ ସିଦ୍ଧାନ୍ତରେ ପହଞ୍ଚିଲା ମାତ୍ରେ ସେ ତାକୁ ଗବେଷଣାପତ୍ର ଆକାରରେ ସଙ୍ଗେ ସଙ୍ଗେ ଲେଖି ଟାଇପ୍ କରାଉଥିଲେ । ମୁହୂର୍ତ୍ତେ ବିଳମ୍ବ ନକରି ସେ ନିଜେ ଡାକଘରକୁ ଯାଇ ତାକୁ ଛପାଇବା ପାଇଁ ଗବେଷଣା ପତ୍ରିକାକୁ ପଠାଉଥିଲେ । ଡାକରେ ପଠାଇବା ବେଳ ଗଡିଯାଇଥିଲେ ବିଳମ୍ବ ପାଇଁ ଅଧିକା ଡାକଟିକଟ ଦେଇ ସେଇଦିନ କୌଣସି ମତେ ପଠାଉଥିଲେ । ଏପରି ଉଚ୍ଛନିଆ ହେବାର କାରଣ ଡେରି ହୋଇଗଲେ ଅନ୍ୟ କିଏ ଏହିପରି ଲେଖା ଆଗରୁ ପଠାଇ ଦେବ ।

ପତ୍ରିକା ପାଖରେ ଯାହାର ଲେଖା ଆଗ ପହଞ୍ଚିବ କେବଳ ତା'ରି ଛପା ହେବ । ପଛଟି ସବୁଦିନ ପାଇଁ ପଛକୁ ରହିବ, ଛପା ନ ହୋଇ ଛପି ଯିବ । ପଛ ଲୋକକୁ କେହି ଜାଣିବେ ନାହିଁ, ତାହାର ସମସ୍ତ ଶ୍ରମ ବୃଥା ହୋଇଯିବ ।

ରୁଷିଆରେ ଦୁଇଜଣ ପଦାର୍ଥ ବିଜ୍ଞାନୀ ଆଲୋକ ବିଚ୍ଛୁରଣ ଉପରେ ଗବେଷଣା ଚଳାଇଥିଲେ । ସେମାନେ ହେଲେ ଲାଣ୍ଡସବର୍ଗ ଓ ମାଣ୍ଡେଲ ଷ୍ଟାମ୍ । ରାମନଙ୍କ ଆବିଷ୍କାର ଘୋଷଣାର ଠିକ୍ ପରେ ପରେ ତାଙ୍କ ପରୀକ୍ଷା ଫଳାଫଳ ଛପାହେଲା । କଠିନ ପଦାର୍ଥ ମଧ୍ୟରେ ସେମାନେ ଆଲୋକ ବିଚ୍ଛୁରଣ ପରୀକ୍ଷା କରି ରାମନସିଦ୍ଧାନ୍ତର ଅନୁରୂପ ଫଳ ପାଇଥିଲେ । ସେମାନେ ଅନେକ ଯୁକ୍ତି କଲେ ଯେ ସ୍ୱାଧୀନଭାବେ ସେମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଥିଲେ । ରାମନଙ୍କ ପରୀକ୍ଷା କଥା ଆଗରୁ ଜାଣି ନଥିଲେ ।

କିନ୍ତୁ ତା'ର ପ୍ରମାଣ କ'ଣ ? ତାଙ୍କ ଗବେଷଣା କଥା ରାମନଙ୍କ ଗବେଷଣା ପତ୍ର ଛପାହେଲା ପରେ ଛପା ହୋଇଥିଲା । ଛପା ହେବାର ବହୁ ଆଗରୁ ଦେଶବିଦେଶରେ

ବୁଲି ରାମନ ତାଙ୍କ ନୂଆ ଆବିଷ୍କାରର ସୂଚନା ଦେଇଥିଲେ । ଏଥିପାଇଁ ୧୯୨୧ରୁ ସେ ବରାବର ପରୀକ୍ଷା କରି ଗବେଷଣା ପତ୍ର ଛପାଉଥିଲେ । ଦେଖାଗଲା ରୁଷିଆ ବୈଜ୍ଞାନିକଙ୍କ ଲେଖାରେ ମଧ ରାମନଙ୍କ କାର୍ଯ୍ୟର ଉଲ୍ଲେଖ ଅଛି ।

ଯେତେବେଳେ ନୋବେଲ ପୁରସ୍କାର ଦେବାକଥା ଉଠିଲା ସେତେବେଳେ କେହି କେହି ଲାଣ୍ଡସବର୍ଗ ଓ ମାଣ୍ଡେଲଷ୍ଟାମ୍‌ଙ୍କ କଥା ଉଠାଇଲେ । କିନ୍ତୁ ବିଚାରକମଣ୍ଡଳୀ ତାହା ଗ୍ରହଣ କଲେ ନାହିଁ । ବହୁଦିନ ପର୍ଯ୍ୟନ୍ତ ରାମନଙ୍କ ବିଚ୍ଛୁରଣ ସମ୍ବନ୍ଧୀୟ ପରୀକ୍ଷାକୁ ରାମନସିଦ୍ଧାନ୍ତ ବୋଲି ରୁଷୀୟ ବୈଜ୍ଞାନିକମାନେ ଗ୍ରହଣ କଲେ ନାହିଁ । ଏପରିକି ପ୍ରସିଦ୍ଧ ରୁଷୀୟ ପଦାର୍ଥବିତ୍ ଲାନ୍ଦାଓ, ଲିଫସିସ୍‌ଙ୍କ ସହ ମିଶି ଯେଉଁ ବହି ଲେଖିଥିଲେ ସେଥିରେ ରାମନସିଦ୍ଧାନ୍ତକୁ ରାମନ-ଲାଣ୍ଡସବର୍ଗ-ମାଣ୍ଡେଲଷ୍ଟାମ ସିଦ୍ଧାନ୍ତ ବୋଲି ଉଲ୍ଲେଖ କରିଛନ୍ତି ।

ରାମନଙ୍କୁ ଏକୁଟିଆ ନୋବେଲ ପୁରସ୍କାର ଦେବା ପାଇଁ ପୃଥିବୀର ବଡ ବଡ ବୈଜ୍ଞାନିକମାନେ ସୁପାରିଶ କରିଥିଲେ । ଏମାନଙ୍କ ମଧରେ ଥିଲେ ଲର୍ଡ ରଦରଫୋର୍ଡ, ନିଲ୍‌ସବୋର୍, ଜିନ ପେରିନ୍, ଇଉଗେନ ବ୍ଲକ୍, ସି.ଟି. ଆର ଉଇଲସନ୍ ଏବଂ ରୁଷୀୟ ବୈଜ୍ଞାନିକ ଚାଉଲସନ୍ ।

ଜଣେ କହିଥିଲେ ସେହି ବର୍ଷର ପୁରସ୍କାର ରାମନ ଓ ହାଇଜେନବର୍ଗଙ୍କୁ ଦେବାପାଇଁ । ରାମନ ଓ ଆର. ଡବ୍ଲିଉ. ଉଡ୍‌କୁ ଦେବାପାଇଁ ଦୁଇଜଣ ପ୍ରସ୍ତାବ କରିଥିଲେ । ଆଉ ଜଣେ ଲେଖିଥିଲେ ଏଥିପାଇଁ ରାମନ, ଲାଣ୍ଡସ ବର୍ଗ ଓ ମାଣ୍ଡେଲଷ୍ଟାମ ପୁରସ୍କାର ପାଆନ୍ତୁ । ବିଚାରକ ମଣ୍ଡଳୀ ସମସ୍ତ ସୁପାରିଶ ପଢ଼ିଲା ପରେ କେବଳ ରାମନଙ୍କୁ ରାମନସିଦ୍ଧାନ୍ତର ଆବିଷ୍କାରକ ବୋଲି ଘୋଷଣା କରି ନୋବେଲ ପୁରସ୍କାର ଦେବାକୁ ମତ ଦେଲେ ।

ରୁଷୀୟ ବୈଜ୍ଞାନିକମାନେ ଦାବି କରୁଥିଲେ ଯେ ରାମନ-କ୍ରିଷ୍ଣନଙ୍କ ପୂର୍ବରୁ ସେମାନେ ଏହି ପ୍ରକାର ପରିବର୍ତ୍ତିତ ବିଚ୍ଛୁରଣ କ୍ୱାର୍ଜ (କଠିନ ପଦାର୍ଥ)ରେ ଲକ୍ଷ୍ୟ କରିଥିଲେ । ସେମାନେ ଜାନୁୟାରୀରେ ଏହି ପରୀକ୍ଷା କରିଥିଲେ । କିନ୍ତୁ ତାଙ୍କ ଫଳାଫଳ ସେମାନେ ଏକ ଜର୍ମାନ ପତ୍ରିକାକୁ ୬.୫.୧୯୨୮ରେ ଲେଖି ପଠାଇଲେ । ତାହା ପତ୍ରିକାରେ ୧୩.୭,୧୯୨୮ରେ ଛପା ହେଲା ।

ସେଇ ଲେଖାରେ ସେମାନେ ସ୍ୱୀକାର କରିଥିଲେ ଯେ ରାମନ-କ୍ରିଷ୍ଣନଙ୍କ ପରୀକ୍ଷିତ ଆଲୋକ ବିଚ୍ଛୁରଣ ସହିତ ତାଙ୍କ ପରୀକ୍ଷାର ସମ୍ପର୍କ ଥାଇପାରେ । କିନ୍ତୁ ରାମନ-କ୍ରିଷ୍ଣନଙ୍କ ପତ୍ର ଅତି ସଂକ୍ଷିପ୍ତ ହୋଇଥିବାରୁ କିଛି ନିର୍ଦ୍ଦିଷ୍ଟ କରି କୁହାଯାଇ ପାରିବ ନାହିଁ । ତେଣୁ ରାମନ ଏ ପରୀକ୍ଷାରେ ଅଗ୍ରଗଣ୍ୟ ବିବେଚିତ ହେଲେ । ରାମନ କାହିଁକି ତାଙ୍କ ପରୀକ୍ଷାର ସିଦ୍ଧାନ୍ତ ଛପାଇବାକୁ ତରବର ହେଉଥିଲେ ଏବେ ତାହା ବୁଝି ହେବ ।

ଲୋକେ କହନ୍ତି ରାମନସିଦ୍ଧାନ୍ତ ଆବିଷ୍କାର କରିବାରେ କ୍ରିଷ୍ଣନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । କିନ୍ତୁ କ୍ରିଷ୍ଣନ ନୋବେଲ ପୁରସ୍କାରରୁ ବଞ୍ଚିତ ହେଲେ । ଏଥିପାଇଁ ରାମନ କିନ୍ତୁ ବିଶ୍ୱାସଘାତକତା କରି ନାହାନ୍ତି । ପ୍ରଥମ ପରୀକ୍ଷାର ଫଳାଫଳ ସେମାନେ ଯୁଗ୍ମ ନାମରେ ଫେବୃୟାରୀ ୧୬ରେ ନେଚରକୁ ପଠାଇଥିଲେ ।

''ନୂଆ ବିକିରଣ'' ଶୀର୍ଷକ ଲେଖାଟିକୁ (୧୯୨୮ ମାର୍ଚ୍ଚ ୮ରେ ନେଚରକୁ ପ୍ରେରିତ) ଛାଡି ଦେଲେ ଅନ୍ୟ ସବୁ ଗବେଷଣାପତ୍ର ସେ କ୍ରିଷ୍ଣନଙ୍କ ସହିତ ଯୁଗ୍ମ ନାମରେ ଛପାଇଥିଲେ । ଲଣ୍ଡନର ରୟାଲ ସୋସାଇଟିର ପ୍ରୋସିଡିଂସରେ ୧୨ ପୃଷ୍ଠାର ଯେଉଁ ଗବେଷଣା ପତ୍ର ଛପା ହୋଇଥିଲା ସେଥିରେ ମଧ୍ୟ ଯୁଗ୍ମ ନାମ ଥିଲା । ଏ ବିଷୟରେ କ୍ରିଷ୍ଣନ ନିଜେ ଯାହା ତାଙ୍କ ଟିପାଖାତା (ଡାଇରି)ରେ ଲେଖି ଯାଇଛନ୍ତି ତାହା ଉଲ୍ଲେଖଯୋଗ୍ୟ ।

# ପରିଚ୍ଛେଦ-୪

## ରାମନ ସିଦ୍ଧାନ୍ତ କଅଣ

ରାମନ ସିଦ୍ଧାନ୍ତ ପୃଥିବୀରେ ଚହଳ ପକାଇଥିଲା, ଏବେବି ତାହାର ଗୁରୁତ୍ୱ କମିନି । ଏହାର ପ୍ରୟୋଗ ଅତି ବ୍ୟାପକ । ପ୍ରକୃତରେ ଏହା କଅଣ ? କୌଣସି ପଦାର୍ଥ ଭିତରକୁ ଆଲୋକ ପଡିଲେ ପଦାର୍ଥର ଅଣୁଗୁଡିକ ତାକୁ ଗ୍ରହଣ କରି ବିଭିନ୍ନ ଦିଗରେ ପଠାଇଥାନ୍ତି । ଏହାକୁ ଆଲୋକ ବିକ୍ଷୁରଣ କୁହାଯାଏ । ଏହା ପ୍ରତିଫଳନ ଓ ପ୍ରତିସରଣଠାରୁ ଭିନ୍ନ । ପ୍ରତିଫଳନରେ ଆଲୋକ ପଦାର୍ଥ ଭିତରକୁ ନଯାଇ ପଦାର୍ଥର ପୃଷ୍ଠରୁ ଫେରି ଆସେ । ଯେଉଁ ମାଧ୍ୟମରୁ ଯାଇଥାଏ ସେଇ ମାଧ୍ୟମକୁ ଫେରି ଆସେ ।

ପ୍ରତିସରଣରେ ଆଲୋକ ପଦାର୍ଥ ଭିତରେ ବା ଦ୍ୱିତୀୟ ମାଧ୍ୟମରେ ଗତିକରେ । ଦୁଇ ମାଧ୍ୟମର ବ୍ୟବଧାନ ପୃଷ୍ଠରେ ତାହା ପ୍ରଥମ ମାଧ୍ୟମର ଗତିପଥରୁ ବଙ୍କେଇ ଯାଏ । କିନ୍ତୁ ବିକ୍ଷୁରଣରେ ଆଲୋକ ଓ ପଦାର୍ଥର ଅଣୁଗୁଡିକ ମଧ୍ୟରେ ଏକ ପାରସ୍ପରିକ କ୍ରିୟା ବା ଅନ୍ତର୍କ୍ରିୟା ଘଟିଥାଏ । ଫଳରେ ପଦାର୍ଥରେ ଥିବା ଅଣୁର ପରିମାଣ, ଆକାର ଓ ପ୍ରକୃତି ଏବଂ ଆଲୋକର ବର୍ଣ୍ଣ (ତରଙ୍ଗ ଦୈର୍ଘ୍ୟ ବା ଆବୃତ୍ତି) ଅନୁସାରେ ବିଭିନ୍ନ ଦିଗକୁ ବିଭିନ୍ନ ପରିମାଣର ଆଲୋକ ନିର୍ଗତ ହୁଏ । ଏହାକୁ ଆଲୋକ ବିକ୍ଷୁରଣ କହନ୍ତି ।

ଏହି ବିକ୍ଷୁରଣ ସାଧାରଣତଃ ଦୁଇ ପ୍ରକାର । ପ୍ରଥମ ପ୍ରକାର ବିକ୍ଷୁରଣରେ ବିକ୍ଷୁରିତ ଆଲୋକର ବର୍ଣ୍ଣ ବଦଳେ ନାହିଁ । ତାହା ମୂଳରୁ ପଡୁଥିବା ଆଲୋକର ବର୍ଣ୍ଣ ସହିତ ସମାନ ରହେ । ଅର୍ଥାତ୍ ନୀଳଆଲୋକ ପଡୁଥିଲେ ବିକ୍ଷୁରିତ ଆଲୋକ ନୀଳ ହୋଇ ରହେ । ବୈଜ୍ଞାନିକ ର୍‌ୟାଲେ ଏହା କିପରି ହେଉଛି ବୁଝାଇ ଦେଇଥିଲେ । ତେଣୁ ଏହାକୁ ର୍‌ୟାଲେବିକ୍ଷୁରଣ କୁହାଯାଏ । ଛାତ କଣା, ଝରକାଫାଙ୍କ ବା କବାଟରନ୍ଧ୍ର ଦେଇ ଆଲୋକରଶ୍ମି ଅନ୍ଧାର ଘରେ ପଡିଲା ବେଳେ ଆଲୋକପଥଟି ଆମକୁ ଦେଖାଯାଏ । ଆଲୋକ ଦେଖିବାରେ ସାହାଯ୍ୟ କରେ ସତ କିନ୍ତୁ ନିଜେ ଅଦୃଶ୍ୟ । ତଥାପି ଆମେ ଆଲୋକପଥକୁ ଦେଖୁ ।

ପ୍ରକୃତରେ ଆଲୋକପଥରେ ଆମେ ଧୂଳିକଣା ବା ଅଙ୍ଗାରକଣା (ଧୂଆଁ) ଦେଖୁ । ସେହି କଣିକାଗୁଡ଼ିକ ଆଲୋକ ବିକ୍ଷୁରଣ କରି ନିଜେ ଦେଖାଯାନ୍ତି । ତାଙ୍କଠାରୁ ଆସୁଥିବା ବିକ୍ଷୁରିତ ଆଲୋକ ସେମାନଙ୍କ ଉପସ୍ଥିତି ଆମକୁ ଜଣାଇ ଦିଏ । ଧୂଳିକଣା ବା ଧୂଆଁ ନଥିଲେ ଆମେ ଆଲୋକର ପ୍ରବେଶପଥ ଦେଖି ପାରନ୍ତେ ନାହିଁ । ଧୂଳିକଣା ବା ଧୂଆଁ ପରିମାଣ ଅଧିକ ଥିଲେ ପଥଟି ଅଧିକ ଆଲୋକିତ ହୁଅନ୍ତା । ଏହି କଣିକାଗୁଡ଼ିକ ଆପତିତ ଆଲୋକର ବର୍ଣ୍ଣ ଧାରଣ କରନ୍ତି । ନୀଳଆକାଶ ଓ ନୀଳସାଗରର ବର୍ଣ୍ଣ ସୂର୍ଯ୍ୟାଲୋକ ବିକ୍ଷୁରଣ ହେତୁ ସମ୍ଭବ ହୋଇଥାଏ । ଏହା ପରେ ଆଲୋଚିତ ହେବ ।

ଦ୍ୱିତୀୟ ପ୍ରକାର ବିକ୍ଷୁରଣରେ ଆପତିତ ଆଲୋକର ବର୍ଣ୍ଣ ସହିତ ନୂଆ ନୂଆ ବର୍ଣ୍ଣ ଜାତ ହୁଏ । ଏହାକୁ ପରିବର୍ତ୍ତିତ ବିକ୍ଷୁରଣ କୁହାଯାଏ । ଏହାକୁ ମଧ୍ୟ କ୍ୱାଣ୍ଟାମବିକ୍ଷୁରଣ ବୋଲି କହିଥାନ୍ତି । ସେହି ପରି ପ୍ରଥମ ପ୍ରକାର ବିକ୍ଷୁରଣର ଅନ୍ୟନାମ ରୀତିସିଦ୍ଧ ବିକ୍ଷୁରଣ । କାରଣ ଆଲୋକକୁ ତରଙ୍ଗ ମନେକଲେ ଏହି ପ୍ରଥମ ପ୍ରକାର ବିକ୍ଷୁରଣ ବୁଝେଇ ହୋଇଯାଏ । କିନ୍ତୁ ଦ୍ୱିତୀୟ ପ୍ରକାର ବିକ୍ଷୁରଣକୁ ଭଲ ଭାବେ ବୁଝାଇବା ପାଇଁ ଆଲୋକକୁ ଏକ କ୍ୱାଣ୍ଟାମ୍ (କଣିକା) ବା ଫୋଟନ ମନେ କରାଯାଏ ।

ଏ.ଏଚ୍. କଂପଟନ ରଞ୍ଜନରଶ୍ମିକୁ ଗୁଡ଼ିଏ ଶକ୍ତିଶାଳୀ ଫୋଟନ କଣିକା ମନେ କରି ତାଙ୍କ ସିଦ୍ଧାନ୍ତ ଦେଲେ । ପଦାର୍ଥରେ ଯେଉଁ ଇଲେକଟ୍ରନ୍‌ଗୁଡ଼ିକ ବିଶେଷଭାବେ ବନ୍ଧନମୁକ୍ତ ହୋଇ ରହିଥାନ୍ତି । ସେମାନେ ରଞ୍ଜନରଶ୍ମି ବିକ୍ଷୁରଣ କରନ୍ତି । ଗୋଟିଏ ମୁକ୍ତ ଇଲେକଟ୍ରନ, ଫୋଟନ କଣିକା ସହିତ ଧକ୍କା (ସଂଘାତ) ଘଟାଏ । ତାହା ଫୋଟନର କିଛି ଶକ୍ତି ଗ୍ରହଣ କରେ ଓ ଫୋଟନ କଣିକା କିଛି ଶକ୍ତି ହରାଏ । ଫୋଟନ କଣିକାର ଶକ୍ତି କମିଯିବାରୁ ତାହା ଏକ ପରିବର୍ତ୍ତିତ ବର୍ଣ୍ଣର ଆଲୋକ ନିର୍ଗତ କରିଥାଏ । ଫଳରେ ବିକ୍ଷୁରିତ ଆଲୋକର ବର୍ଣ୍ଣ ଆପତିତ ଆଲୋକର ବର୍ଣ୍ଣଠାରୁ ଭିନ୍ନ ହୁଏ ।

୧୯୨୩ରେ କଂପଟନସିଦ୍ଧାନ୍ତ ବାହାରିଲା ବେଳେ ରାମନ ଓ କଂପଟନ ଏହାକୁ ତରଙ୍ଗତତ୍ତ୍ୱରୁ ବୁଝାଇବାକୁ ଚେଷ୍ଟା କରିଥିଲେ ଓ ସଫଳ ହୋଇଥିଲେ ମଧ୍ୟ । କିନ୍ତୁ ଫୋଟନତତ୍ତ୍ୱ ସାହାଯ୍ୟରେ ଏକ୍ସରେର ପରିବର୍ତ୍ତିତ ବିକ୍ଷୁରଣ ସହଜରେ ବୁଝେଇ ହୋଇଗଲା । ରାମନ ତ ୧୯୨୧ରୁ ସାଗରର ନୀଳବର୍ଣ୍ଣ ବୁଝାଇବାପାଇଁ ଆଲୋକର ବିକ୍ଷୁରଣ ପରୀକ୍ଷା ଆରମ୍ଭ କରି ଦେଇଥିଲେ । ତେଣୁ ତାଙ୍କ ମନକୁ ହଠାତ୍ ଛୁଟିଲା ଯେଉଁ ଆଲୋକ ଦର୍ଶନ ଧାରଣା ଦେଉଛି (ଦୃଶ୍ୟମାନ ଆଲୋକ) ଏକ୍ସରେ ପରି ବ୍ୟବହାର ନ କରିବ କାହିଁକି ? ଆଲୋକରେ ମଧ୍ୟ ପରିବର୍ତ୍ତିତ ବିକ୍ଷୁରଣ ଘଟିବ ।

୧୯୨୧ରେ ରାମନାଥନ ଯେତେବେଳେ ଜଳର ଆଲୋକ ବିକ୍ଷୁରଣ ପରୀକ୍ଷା

ଆରମ୍ଭ କଲେ ସେ ବିଚ୍ଛୁରଣରେ ସେହି ପରିବର୍ତ୍ତିତ ବର୍ଣ୍ଣରେଖାକୁ ଖୋଜି ବସିଲେ । କିନ୍ତୁ ତାହା ସେତେବେଳେ ପ୍ରାଞ୍ଜଳ ହେଲା ନାହିଁ । ବିଚ୍ଛୁରଣରେ ସେ ଯେଉଁ ବର୍ଣ୍ଣ ପରିବର୍ତ୍ତନ ଦେଖିଲେ ସେ ଭାବିଲେ ତାହା ଜଳରେ ମିଶିଥିବା କେତେକ ଖାଦ ବା ଅପଦ୍ରବ ପାଇଁ ଘଟୁଛି । ତାହା ଏକ ପ୍ରକାର ପ୍ରତିଦୀପ୍ତି । ରାସାୟନିକକ୍ରିୟା କିମ୍ବା ଅନ୍ୟ କେତେକ କାରଣରୁ ଏପରି ବର୍ଣ୍ଣ ବଦଳ ଘଟି ଥାଇ ପାରେ । ରାମନ ଜଳକୁ ବାରମ୍ବାର ପାତନ (ବାଷ୍ପ କରି ପୁଣି ଜଳ କରିବା) କଲେ । କିନ୍ତୁ ତଥାପି ବିଚ୍ଛୁରଣରେ ଏକ କ୍ଷୀଣ ପ୍ରତିଦୀପ୍ତ ଆଲୋକ ରହିଲା ।

୧୯୨୭ରେ କଂପଟନ ତାଙ୍କ ସିଦ୍ଧାନ୍ତ ପାଇଁ ନୋବେଲ ପୁରସ୍କାର ପାଇବାପରେ ରାମନ ତାଙ୍କର ପ୍ରଧାନ ସହକର୍ମୀ କ୍ରିଷ୍ଣନ ଓ ଭେଙ୍କଟଶ୍ୱରନଙ୍କ ସହିତ ମିଶି ପ୍ରବଳ ଉତ୍ସାହରେ ତାଙ୍କ ପରୀକ୍ଷା ଆରମ୍ଭ କରିଦେଲେ । ଭେଙ୍କଟେଶ୍ୱରନ ସରକାରୀ କର୍ମଚାରୀ ଥିଲେ, ବେଶୀ ସମୟ ପରୀକ୍ଷା ପାଇଁ ଦେଇ ପାରୁ ନଥିଲେ । ତେଣୁ ରାମନ କ୍ରିଷ୍ଣନଙ୍କୁ ପରୀକ୍ଷା କରିବାକୁ କହିଲେ । କ୍ରିଷ୍ଣନ ସେତେବେଳେ ତାତ୍ତ୍ୱିକ ଗବେଷଣାରେ ମାତିଥିଲେ । ପ୍ରାୟ ୨ ବର୍ଷକାଳ ପରୀକ୍ଷାଗାରରେ କୌଣସି ପରୀକ୍ଷା କରି ନଥିଲେ ।


ରାମନ ବର୍ଣ୍ଣାଳୀ

ଅଷ୍ଟ୍ରିଆର ପଦାର୍ଥବିତ୍ ଏ. ସ୍ମେକଲ ୧୯୨୩ରେ କ୍ୱାଣ୍ଟମ ଗତିବିଜ୍ଞାନରୁ ପ୍ରମାଣ କରିଥାନ୍ତି ଯେ ଆପତିତ ଫୋଟନ ପଦାର୍ଥର ଅଣୁ ସହିତ ଶକ୍ତି ବିନିମୟ କରିବ । ଫୋଟନର ଶକ୍ତି କମିଯିବ । ସେହି ହ୍ରାସଶକ୍ତି ଅଣୁକୁ ଉତ୍ତେଜିତ କରି ପରବର୍ତ୍ତୀ ଶକ୍ତିସ୍ତରକୁ ନେଇଯିବ । ତାପରେ କ୍ରେମର୍ସ ଏବଂ ହାଇଜେନବର୍ଗ ରୀତିସିଦ୍ଧ ପ୍ରଣାଳୀ ଓ କ୍ୱାଣ୍ଟମ ଗତିବିଜ୍ଞାନରୁ ଏହା ପ୍ରମାଣ କଲେ । ୧୯୨୭ରେ ଡିରାକ ଏଭଳି ବିଚ୍ଛୁରିତ ଆଲୋକର ଶକ୍ତି ତୀବ୍ରତା କେତେ ହେବ କ୍ୱାଣ୍ଟମ ଗତିବିଜ୍ଞାନରୁ ପ୍ରମାଣ କଲେ ।

କିନ୍ତୁ ପୃଥିବୀରେ ସେପର୍ଯ୍ୟନ୍ତ କେହି ପରୀକ୍ଷାଗାରରେ ପରୀକ୍ଷା କରି ବିଚ୍ଛୁରିତ ଆଲୋକର ବର୍ଣ୍ଣ କିପରି ପରିବର୍ତ୍ତିତ ହେଉଛି ଦେଖାଇ ନଥିଲେ ।

ବୈଜ୍ଞାନିକମାନେ କେବଳ ଏକ୍ସରେରେ ଏହି ପରିବର୍ତ୍ତନ ଦେଖାଇଥିଲେ । ସେହି ଅନ୍ତର୍କ୍ରିୟାରେ ଇଲେକଟ୍ରନ ଭାଗ ନେଉଥିଲା । ତେଣୁ ରାମନଙ୍କର ଦୃଢ଼ ଧାରଣା ହୋଇଥିଲା ଯେ ସେ ଦୃଶ୍ୟମାନ ଆଲୋକରେ ଏହି ପରିବର୍ତ୍ତିତ ବିଚ୍ଛୁରଣ ଦେଖାଇ ପାରିବେ ।




ଚିତ୍ର-୮ (କ)-ର୍‌ୟାଲେ ବିଚ୍ଛୁରଣ     ଚିତ୍ର-୮ (ଖ)-ପ୍ରତିଦୀପ୍ତି




ଚିତ୍ର-୮ (ଗ)-ରାମନ ବିଚ୍ଛୁରଣ

ରାମନ ବର୍ଣ୍ଣାଳୀ ହୁଏ କିପରି

ସେପର୍ଯ୍ୟନ୍ତ ରାମନାଥନ ଯାହାକୁ କ୍ଷୀଣ ପ୍ରତିଦୀପ୍ତ ଆଲୋକ ବୋଲି ଦେଖାଇ ଆସୁଥିଲେ ତାହା ହୁଏତ ସେହି ପରିବର୍ତ୍ତିତ ବିଚ୍ଛୁରଣ ହୋଇପାରେ । ଭେଙ୍କଟେଶ୍ୱରନ୍ ଗ୍ଲିସେରିନ୍‌ରେ ପରୀକ୍ଷା କରି ଦେଖାଇ ଦେଲେ ଯେ ସୂର୍ଯ୍ୟାଲୋକର ନୀଳ ଅଂଶ ଗ୍ଲିସେରିନରେ ପଡୁଛି ଓ ଗ୍ଲିସେରିନ୍‌ରୁ ବିଚ୍ଛୁରିତ ହୋଇ ସବୁଜ ଆଲୋକ ବାହାରୁଛି ।

ଏହି ସବୁଜ ଆଲୋକ ତୀବ୍ର ଭାବେ ଧ୍ରୁବିତ ବା ପାର୍ଶ୍ୱୀକୃତ । ଏହା ପ୍ରତିଦୀପ୍ତ ହୋଇଥିଲେ ଧ୍ରୁବିତ ହୋଇନଥାନ୍ତା । ପରେ ରାମନ-କ୍ରିଷ୍ଣନଙ୍କ ପରୀକ୍ଷାରୁ ଏହା ସ୍ପଷ୍ଟ ହୋଇଗଲା । ଯାହା ଜଣାପଡେ ଅଣୁ ଫୋଟନ ଗ୍ରହଣ କରି ଅନ୍ୟ ଏକ ଉଚ୍ଚ ଶକ୍ତିସ୍ତରକୁ ଯାଏ ଓ ଅବଶିଷ୍ଟ ଶକ୍ତି ଫୋଟନ ରୂପେ ନିର୍ଗତ ହୁଏ । ଏହି ଫୋଟନର ଶକ୍ତି କମ୍‌ହୁଏ । ଏହା ଭିନ୍ନ ବର୍ଣ୍ଣର ଆଲୋକ ନିର୍ଗତ କରାଏ । ଏହି ଆଲୋକର ତରଙ୍ଗଦୈର୍ଘ୍ୟ ମୂଳ ତରଙ୍ଗଦୈର୍ଘ୍ୟଠାରୁ ବେଶି ହୁଏ । ଏହାକୁ ଷ୍ଟୋକ୍‌ସ ବର୍ଣ୍ଣରେଖା କୁହାଯାଏ । ପ୍ରତିଦୀପ୍ତିରେ ଏଭଳି ନିମ୍ନ ବର୍ଣ୍ଣର ଆଲୋକ ବାହାରିବ ବୋଲି ଆଗରୁ ବୈଜ୍ଞାନିକ ଷ୍ଟୋକ୍‌ସ ସୂଚାଇ ଥିଲେ ।

ଉତ୍ତେଜିତ ଅବସ୍ଥାରେ ଥିବା ଅଣୁ ଫୋଟନ ଗ୍ରହଣ କରି ତାହାର ସାଧାରଣ ଶକ୍ତିସ୍ତରକୁ ଆସିଲେ ଯେଉଁ ଫୋଟନ ନିର୍ଗତ କରାଏ ତାହାର ଶକ୍ତି ଗୃହୀତ ଫୋଟନର ଶକ୍ତିଠାରୁ ଅଧିକ ହୁଏ । ଏହାଦ୍ୱାରା ଜାତ ହେଉଥିବା ଆଲୋକର ବର୍ଣ୍ଣ ବର୍ଣ୍ଣାଳୀର ଉଚ୍ଚକ୍ରମକୁଯାଏ । କାରଣ ଶକ୍ତି ବେଶି ହେଉଥିବାରୁ ତରଙ୍ଗଦୈର୍ଘ୍ୟ କମିଯାଏ । ମୂଳରୁ ନୀଳଆଲୋକ ପଡୁଥିଲେ ବିଚ୍ଛୁରିତ ଆଲୋକ ବାଇଗଣୀ ହୋଇପାରେ ବା ସବୁଜ ପଡୁଥିଲେ ନୀଳ ହୋଇପାରେ । ଷ୍ଟୋକସ୍ ବର୍ଣ୍ଣରେଖାର ବିପରୀତ ପାର୍ଶ୍ୱରେ ଏହା ରହୁଥିବାରୁ ଏହାକୁ ଆଣ୍ଟିଷ୍ଟୋକ୍‌ସ ବର୍ଣ୍ଣରେଖା କହନ୍ତି ।

ଏହିପରି ମୂଳ ବର୍ଣ୍ଣରେଖାଠାରୁ ଷ୍ଟୋକ୍‌ସରେଖା ଗୋଟିଏ ପାର୍ଶ୍ୱରେ ଯେତିକି ଘୁଞ୍ଚିଥାଏ, ଆଣ୍ଟିଷ୍ଟୋକ୍‌ସ ରେଖା ଅନ୍ୟ ପାର୍ଶ୍ୱରେ ସେତିକି ଘୁଞ୍ଚିଥାଏ । ମୂଳରେଖାଠାରୁ ଷ୍ଟୋକସ୍ ବା ଆଣ୍ଟିଷ୍ଟୋକ୍‌ସ ରେଖାର ବ୍ୟବଧାନ ଅଣୁର ଦୁଇଟି ଶକ୍ତିସ୍ତରର ବ୍ୟବଧାନ ସହିତ ସମାନ ହୁଏ । ତେଣୁ ଅଣୁର ଶକ୍ତିସ୍ତର କିପରି ପୃଥକ୍ ହୋଇ ରହିଛି ତାହା ରାମନବର୍ଣ୍ଣାଳୀ ଚିତ୍ରରୁ ଜଣାପଡେ । ଫଳରେ ଅଣୁ ସମ୍ବନ୍ଧରେ ଜାଣିବା ପାଇଁ ରାମନବର୍ଣ୍ଣାଳୀର ସାହାଯ୍ୟ ନିଆଗଲା । ରାମନ ବର୍ଣ୍ଣବିଜ୍ଞାନର ପ୍ରୟୋଗ ଖୁବ୍ ପ୍ରସାର ଲାଭ କଲା ।

## କ୍ରିଷ୍ଣନ୍‌ଙ୍କ ଡାଇରି

ଅନେକ ଭାବନ୍ତି ରାମନ ସିଦ୍ଧାନ୍ତ ପ୍ରକୃତରେ କ୍ରିଷ୍ଣନ ଆବିଷ୍କାର କରିଥିଲେ । ସେପରି ଭାବିବାରେ କୌଣସି ଯଥାର୍ଥତା ନାହିଁ । ତାହା କ୍ରିଷ୍ଣନଙ୍କ ଡାଇରି ପଢ଼ିଲେ ସ୍ପଷ୍ଟ ହୋଇଯିବ । ରାମନ ୧୯୨୧ରୁ ବିଚ୍ଛୁରଣ ପରୀକ୍ଷା ଆରମ୍ଭ କରିଥିଲେ । ଏଥିପାଇଁ ସେ ୧୯୨୩ରେ ରାମନାଥନଙ୍କୁ ନେଇ ପରୀକ୍ଷା କରାଇଥିଲେ । ରାମନାଥନ ରାମନସିଦ୍ଧାନ୍ତର ମୂଳଦୁଆ ପକାଇଥିଲେ, କିନ୍ତୁ ଏଥିରୁ ସେପରି କଛି ତାତ୍ପର୍ଯ୍ୟପୂର୍ଣ୍ଣ ତଥ୍ୟ ମିଳିବ ବୋଲି ତାଙ୍କର ବିଶ୍ୱାସ ନଥିଲା । ସେ ବରାବର ଭାବୁଥିଲେ ଜଳରେ

ଥିବା ଅପଦ୍ରବ ଭିନ୍ନ ବର୍ଣ୍ଣର ପ୍ରତିଦୀପ୍ତି ଘଟାଉଛି । ସେ ଅନ୍ୟ ସମସ୍ୟା ଉପରେ ତାଙ୍କର ଗବେଷଣା ଚଳାଇଲେ । କିନ୍ତୁ ରାମନ ବିଚ୍ଛୁରଣ ପରୀକ୍ଷାରେ ବ୍ୟସ୍ତ ରହିଲେ ।

୧୯୨୪ରେ କ୍ରିଷ୍ଣନ ୬୦ଟି ତରଳ ନେଇ ଏହି ବିଚ୍ଛୁରଣ ପରୀକ୍ଷା ଚଳେଇଲେ । ପ୍ରତ୍ୟେକରେ ସେ କ୍ଷୀଣ ପ୍ରତିଦୀପ୍ତ ଆଲୋକ ପାଇଲେ । ଏହି ପ୍ରତିଦୀପ୍ତ ଆଲୋକର ବର୍ଣ୍ଣ ମୂଳବର୍ଣ୍ଣଠାରୁ ଭିନ୍ନ ଥିଲା । ତା ପରେ ପ୍ରାୟ ୨ ବର୍ଷ କ୍ରିଷ୍ଣନ ତାତ୍ତ୍ୱିକ ଗବେଷଣାରେ ମାତିଲେ । ପରୀକ୍ଷାଗାରରେ ଆଉ ପରୀକ୍ଷା କଲେ ନାହିଁ ।



ପ୍ରିୟ ସହଯୋଗୀ- କେ. ଏସ୍. କ୍ରିଷ୍ଣନ୍

୧୯୨୭ରେ ଭେଙ୍କଟେଶ୍ୱରନ ଗ୍ଲିସେରିନରେ ପ୍ରଥମେ ନିଶ୍ଚିତଭାବେ ଦେଖାଇ ଦେଲେ ଯେ ତଥାକଥିତ ପ୍ରତିଦୀପ୍ତ ଆଲୋକ ତୀବ୍ରଭାବେ ଧ୍ରୁବିୟ । ସେତେବେଳକୁ

କଂପଟନସିଦ୍ଧାନ୍ତ ପାଇଁ ନୋବେଲ ପୁରସ୍କାର ମିଳିଥିଲା । ରାମନଙ୍କ ଧ୍ରୁବ ବିଶ୍ବାସ ହୋଇଥିଲା ସେ ମଧ ଆଲୋକର ପରିବର୍ତ୍ତିତ ବିଚ୍ଛୁରଣ ଦେଖାଇ ପାରିବେ । କ୍ରିଷ୍ଣନ୍‌ଙ୍କୁ ପ୍ରବର୍ତ୍ତାଇ ସେ ପୁଣି ପରୀକ୍ଷାଗାରକୁ ଫେରାଇ ଆଣିଥିଲେ । ଏସବୁ ବିଚାର କଲେ ସ୍ପଷ୍ଟ ହୋଇଯାଏ ଯେ ରାମନସିଦ୍ଧାନ୍ତର ଆବିଷ୍କାରକ କିଏ ?

ରଙ୍ଗମଞ୍ଚରେ ଅନେକ ଅଭିନେତା ଥିଲେ ସତ କିନ୍ତୁ ସେମାନେ କି ଅଭିନୟ କରୁଛନ୍ତି ଜାଣି ନଥିଲେ । ଯଦି ବା ଅଭିନୟ କଥା ଜାଣୁଥିବେ ତଥାପି କି ନାଟକ ଅଭିନୀତ ହେବାକୁ ଯାଉଥିଲା ସେମାନେ ସ୍ପଷ୍ଟ ଧାରଣା କରି ପାରି ନଥିଲେ । କିନ୍ତୁ ରାମନଙ୍କର ଅତୁଟ ବିଶ୍ବାସ ଥିଲା ଯେ ତାଙ୍କ ନାଟକ ଦିନେ ସଫଳ ରୂପ ନେବ । ତେଣୁ ସେ ଅଭିନେତାଙ୍କୁ ପୂର୍ଣ୍ଣ ପ୍ରାଣରେ ଉତ୍ସାହିତ କରୁଥିଲେ । ଏହା କ୍ରିଷ୍ଣନଙ୍କ ଡାଇରିରୁ ସୁସ୍ପଷ୍ଟ ହୋଇଯିବ ।

୫ ଫେବୃୟାରୀ, ୧୯୨୮ – ଗତ ୩/୪ ଦିନ ହେବ ମୁଁ ପ୍ରତିଦୀପ୍ତି ପରୀକ୍ଷାରେ ମାତିଛି, ଏ ପର୍ଯ୍ୟନ୍ତ ଏହାର ତତ୍ତ୍ୱ କାହାକୁ ଜଣାନାହିଁ । ଆନ୍ଥ୍ରାସିନ ବାଷ୍ପର ପ୍ରତିଦୀପ୍ତି ପରୀକ୍ଷା କରୁଛି । ପ୍ରଫେସର (ରାମନ) ମୋ ସହିତ ବରାବର ମିଶି କାମ କରୁଛନ୍ତି । ଆନ୍ଥ୍ରାସିନ ବାଷ୍ପର ପ୍ରତିଦୀପ୍ତ ଆଲୋକରେ ଆଦୌ ଧ୍ରୁବଣ ହେଉ ନାହିଁ ।

୭ ଫେବୃୟାରୀ, ମଙ୍ଗଳବାର – ପ୍ରତ୍ୟେକ ତରଳରେ ପ୍ରତିଦୀପ୍ତ ଆଲୋକ ତୀବ୍ରଭାବେ ଧ୍ରୁବିତ ହେଲା । ପ୍ରଫେସର ନିଜେ ଆସି ଦେଖିଲେ । ପୁଣି ରାତି ୯ରେ ମୋ ବସାକୁ ଆସିଲେ । ସେତେବେଳେ ମୁଁ ଓ ଭେଙ୍କଟେଶ୍ବରନ୍ ବସି ଗପସପ ହେଉଥିଲୁ । ତାଙ୍କୁ ଦେଖି ଆମେ ଧାଇଁ ଗଲୁ । ସେ ଆନନ୍ଦରେ ଗଦ୍‌ଗଦ୍ ହୋଇ କହୁଥାନ୍ତି ଆମେ ଆଜି ଯାହା ଦେଖିଛେ ତାହା କ୍ରେମର୍‌ସ- ହାଇଜେନବର୍ଗ ସିଦ୍ଧାନ୍ତ । ଏହାକୁ ଏଣିକି ପ୍ରତିଦୀପ୍ତି ନକହି ପରିବର୍ତ୍ତିତ ବିଚ୍ଛୁରଣ କହିବା । ଏହା ନିଶ୍ଚୟ ଏକ ଚମକପ୍ରଦ ଆବିଷ୍କାର ହେବ ।

୮ ଫେବୃୟାରୀ, ବୁଧବାର – ପରିବର୍ତ୍ତିତ ବିଚ୍ଛୁରଣର ଅନ୍ୟ କେତୋଟି ପରୀକ୍ଷା ହେଲା ।

୯ ଫେବୃୟାରୀ ଗୁରୁବାର – ସକାଳେ ଇଥର ବାଷ୍ପ ଉପରେ ପରୀକ୍ଷା ଆରମ୍ଭ କଲୁ । ପ୍ରଫେସର କ୍ଲାସକୁ ଗଲେ । ସେ ପୁଣି ଦିନ ୩ଟାକୁ ଆସି ପରୀକ୍ଷା କଲେ । ସେ କହିଲେ ଅଧାରୁ ପରୀକ୍ଷା ଛାଡି ଚାଲିଯିବାରୁ ମୋର ପଢ଼ାଇବାରେ ମନ ଲାଗିଲା ନାହିଁ । ଯାହାହେଉ ସବୁ ଗ୍ୟାସ୍‌ରେ ଏ ପରୀକ୍ଷା ନକରି ଆମେ ଛାଡିବା ନାହିଁ । ସନ୍ଧ୍ୟାଭ୍ରମଣରୁ ଫେରି ସେ ମୋତେ ଏ ପରୀକ୍ଷା ପରେ ପରେ ଇଲେକ୍‌ଟ୍ରନର ସ୍ପିନ ସମ୍ବନ୍ଧରେ ପରୀକ୍ଷା କରିବାକୁ କହିଲେ ।

୧୦ ରୁ ୧୫ ଫେବୃୟାରୀ – ଗୁଡିଏ ବାଷ୍ପ ଉପରେ ପରୀକ୍ଷା କଲୁ ।

୧୬ ଫେବୃୟାରୀ ଗୁରୁବାର – ଉଚ୍ଚ ତାପମାତ୍ରାରେ ଥିବା ପେଣ୍ଟେନ ବାଷ୍ପ ଉପରେ ପରୀକ୍ଷା କଲୁ । "ଏକ ନୂଆ ପ୍ରକାର ଦ୍ୱିତୀୟକ ବିକିରଣ" ଉପରେ ଯୁଗ୍ମ ନାମରେ ଗବେଷଣାପତ୍ର ଲେଖି ନେଚରକୁ ପଠାଇଲୁ ।

୧୭ ଫେବୃୟାରୀ, ଶୁକ୍ରବାର – ମୋ ବାଁ ଆଖିକୁ କଷ୍ଟ ହେଉଥିବାରୁ ପ୍ରଫେସର ନିଜେ ପର୍ଯ୍ୟବେକ୍ଷଣ କରି ପେଣ୍ଟେନବାଷ୍ପର ପ୍ରତିଦୀପ୍ତିରେ ଧ୍ରୁବଣ ହେଉଥିବା କଥା ପ୍ରତିପାଦନ କଲେ ।

୧୮ ରୁ ୨୬ ଫେବୃୟାରୀ – ଗୁଡିଏ ବାଷ୍ପ ଉପରେ ପରୀକ୍ଷା କରାଗଲା ।

୨୭ ଫେବୃୟାରୀ, ସୋମବାର – ଘରେ ଓଷା ଥିଲା, ଆସୋସିଏସନକୁ ଗଲି ନାହିଁ ।

୨୮ ଫେବୃୟାରୀ, ମଙ୍ଗଳବାର – ପରୀକ୍ଷାଗାରକୁ ଗଲା ବେଳକୁ ପ୍ରଫେସର ସେଠାରେ ଥିଲେ । ଭେଙ୍କଟେଶ୍ୱରନ ମଧ୍ୟ ଥିଲେ । ବେଞ୍ଜିନ ନେଇ ପରୀକ୍ଷା କରିବାରୁ ପରିବର୍ତ୍ତିତ ବିକ୍ଷୁରଣ ବର୍ଣ୍ଣରେଖା ମୂଳ ବର୍ଣ୍ଣରେଖାଠାରୁ ପୃଥକ୍ ହୋଇଗଲା । ତାକୁ ସଠିକ୍ ଭାବେ କଳନା କରାଯାଇ ଏହା "ଏକ ନୂତନ ବିକିରଣ" ବୋଲି ଘୋଷଣା କରାଗଲା । ପ୍ରଫେସର ୧୬ ମାର୍ଚ୍ଚ ୧୯୨୮ରେ ତାଙ୍କ ଭାଷଣରେ ତା'ର ଟିକିନିଖି ବିବରଣୀ ଦେଲେ ଏବଂ ୩୧ ମାର୍ଚ୍ଚ ୧୯୨୮ରେ ଇଣ୍ଡିଆନ ଜର୍ଣ୍ଣାଲ ଅଫ ଫିଜିକ୍ସରେ ଛପାଇଲେ । ୨୦୦୦ ପୁନର୍ମୁଦ୍ରିତ କପି ପୃଥିବୀର ବୈଜ୍ଞାନିକ ମହଲରେ ବାଣ୍ଟି ଦିଆଗଲା ।

୧୯୨୧ରୁ ୧୯୨୮ ପର୍ଯ୍ୟନ୍ତ ଯେଉଁ ପରୀକ୍ଷା ପ୍ରଫେସର ଏକନିଷ୍ଠ ଚିତ୍ତରେ ଚଳେଇ ଆସିଥିଲେ ତାହାର ସଫଳ ରୂପାୟନ ହେଲା । ତାହା ଏକ କ୍ଷୀଣ ପ୍ରତିଦୀପ୍ତି ନୁହେଁ, ପ୍ରକୃତରେ ଏକ ନୂତନ ବିକିରଣ, ମହାନ୍ ରାମନ ସିଦ୍ଧାନ୍ତ, ଆଧୁନିକ ପଦାର୍ଥବିଜ୍ଞାନର ଏକ ଗୁରୁତ୍ୱପୂର୍ଣ୍ଣ ମୌଳିକ ଆବିଷ୍କାର ।

# ପରିଚ୍ଛେଦ-୫

## ଲୋକସୁନ୍ଦରୀ ରାମନ

କୁହାଯାଏ କୌଣସି ପୁରୁଷର କୃତିତ୍ୱ ପଛରେ ଏକ ନାରୀର ପ୍ରେରଣା ଥାଏ । ଯଦି ପୁରୁଷଟି ବିବାହ କରିଥାଏ ତାହାହେଲେ ଅଧିକାଂଶ କ୍ଷେତ୍ରରେ ସେ ମହିଳା ଜଣକ ତାଙ୍କ ଧର୍ମପତ୍ନୀ ନିଶ୍ଚୟ । ଅବଶ୍ୟ କେତେକ କ୍ଷେତ୍ରରେ ବ୍ୟତିକ୍ରମ ଦେଖାଯାଏ । ନାରୀ ପ୍ରତିବନ୍ଧକ ହୋଇ ଠିଆ ହୁଏ । ବିଶେଷତଃ ମହାପୁରୁଷମାନେ ସାଧନାର ସିଦ୍ଧି ପାଇଁ କାମିନୀ ଓ କାଞ୍ଚନଠାରୁ ଦୂରେଇ ଯାନ୍ତି । ଶୁଣାଯାଏ ବୈଜ୍ଞାନିକ କାଭେଣ୍ଡିସ୍ ତାଙ୍କ ଗବେଷଣାରେ ବ୍ୟାଘାତ ହେବ ବୋଲି ସ୍ତ୍ରୀ ମୁଖ ଦର୍ଶନ କରି ନଥିଲେ । ଦିନେ ଭୁଲରେ ତାଙ୍କ ଚାକରାଣୀ ତାଙ୍କ ଆଗରେ ପଡିଗଲା । ସେ ତାକୁ ସେଇଦିନ ଚାକିରିରୁ ବାହାର କରିଦେଲେ । ଅବଶ୍ୟ ମନୋବିଜ୍ଞାନୀମାନେ ଏହାକୁ ଏକପ୍ରକାର ପାଗଳାମି ବୋଲି କହନ୍ତି ।



ପତ୍ନୀ- ଲୋକସୁନ୍ଦରୀଙ୍କ ସହ

ରାମନଙ୍କ ଧର୍ମପତ୍ନୀ ରାମନଙ୍କୁ କିପରି ସାହାଯ୍ୟ କରିଛନ୍ତି ? ଯେଉଁମାନେ ରାମନଙ୍କ ଜୀବନ ଚରିତ ଆଲୋଚନା କରିଛନ୍ତି ସେମାନେ ଶ୍ରୀମତୀ ଲୋକସୁନ୍ଦରୀ ରାମନଙ୍କ ଭୂୟସୀ ପ୍ରଶଂସା କରିଛନ୍ତି ।

ଏପରିକି ପ୍ରଫେସର ରାମଶେଷନ କହନ୍ତି ଲୋକସୁନ୍ଦରୀ ଯାହାକୁ ବିବାହ କରିଥିଲେ ସେ ତ ଜଣେ ସାମାନ୍ୟ ପୁରୁଷ ନୁହନ୍ତି । ପ୍ରକୃତରେ ଏକ ପ୍ରବଳ ପ୍ରଭଞ୍ଜନ । ରାମନଙ୍କ ବ୍ୟକ୍ତିତ୍ୱକୁ ସେ ପ୍ରବଳ ଝଡ ସଙ୍ଗେ ତୁଳନା କରିଛନ୍ତି । କାରଣ ସେ ସଦା ଅସ୍ଥିର । ତାଙ୍କ ମନରେ ଶହ ଶହ ଭାବନାର ତରଙ୍ଗ ଉଠୁଥିଲା । ଶରୀର ମଧ୍ୟରେ ଏଭଳି ଏକ ବିକ୍ଷୁବ୍ଧ ମନ କାର୍ଯ୍ୟକାରୀ ହେଉଥିଲେ ତାହା କ'ଣ କାହାକୁ କେଉଁଠି ସ୍ଥିର ରଖେଇ ଦେବ ? ଏହିଭଳି ଏକ ପ୍ରଭଞ୍ଜନ ସଦୃଶ ପୁରୁଷର ହାତ ଧରି ଲୋକସୁନ୍ଦରୀ ୬୩ ବର୍ଷ କଟାଇଥିଲେ ।

ଲୋକସୁନ୍ଦରୀଙ୍କ ବିବାହ କେହି ଯୋଗାଡ କରି ନଥିଲା । ରାମନ ନିଜେ ଲୋକସୁନ୍ଦରୀଙ୍କୁ ଜୀବନ ସଙ୍ଗିନୀ ରୂପେ ପସନ୍ଦ କରିଥିଲେ । ମାନ୍ଦ୍ରାଜର ପ୍ରେସିଡେନ୍ସି କଲେଜରେ ପଢୁଥିଲା ବେଳେ ରାମନ ଶ୍ରୀ ରାମସ୍ୱାମୀ ଶିବାନଙ୍କ ସହିତ ପରିଚିତ ହେଲେ । ଶିବାନ ଜଣେ ପ୍ରଗତିବାଦୀ ଯୁବକ ଥିଲେ, ବ୍ରହ୍ମବିଦ୍ୟାରେ ବିଶ୍ୱାସ କରୁଥିଲେ । ତେଣୁ ଉଭୟଙ୍କ ମଧ୍ୟରେ ଘନିଷ୍ଠତା ଜନ୍ମିଲା । ରାମନ ମଝିରେ ମଝିରେ ଶିବାନଙ୍କ ଘରକୁ ଯାଆନ୍ତି ।

ଦିନେ ରାମନ ତାଙ୍କ ଘରକୁ ଯାଇ ସେଠାରେ କିଏ ବୀଣା ବଜାଉଥିବାର ଶୁଣିଲେ । ସେଦିନ ମଦୁରାଇରୁ ଶିବାନଙ୍କ ଶାଳୀ ତାଙ୍କ ଘରକୁ ଆସିଥିଲେ । ସେ ସୁନ୍ଦର ବୀଣା ବଜାନ୍ତି । ସେଦିନ ସେ ତ୍ୟାଗରାଜ କୀର୍ତ୍ତନ ଗାଇ ବୀଣା ବଜାଉଥିଲେ । ସ୍ୱର ଧରି ଗାଉଥିଲେ ''ରାମନି ସମନାମ ଭବାରୋ (ହେ ରାମ ତମ ସହିତ କିଏ ସମାନ ହେବ ?)'' ରାମନ ବୀଣା ଝଙ୍କାରରେ ମୁଗ୍ଧ ହୋଇ କିଏ ବଜାଉଛନ୍ତି ତାଙ୍କୁ ଦେଖିବାକୁ ଚାହିଁଲେ । ଲୋକସୁନ୍ଦରୀଙ୍କ ସହିତ ଦେଖାହେଲା; ପ୍ରଥମଦେଖାରେ ସେ ତାଙ୍କୁ ଭଲ ପାଇ ବସିଲେ ।

ସେସମୟକୁ ଚାହିଁଲେ ଲୋକସୁନ୍ଦରୀଙ୍କ ବିବାହଯୋଗ୍ୟ ବୟସ ହୋଇଥିଲା । ଝିଅର ବାପାମା ଯୋଗ୍ୟ ବ୍ରାଇଁଟିଏ ଖୋଜୁଥିଲେ । ପ୍ରତିଭାବାନ୍ ରାମନଙ୍କଠାରୁ ଅଧିକ ଯୋଗ୍ୟ କ'ଣ ଆଉ କିଏ ହୋଇପାରେ ? ଶିବାନ ଅତି ସତର୍କତାର ସହିତ ରାମନଙ୍କ ମନକଥା ଜାଣିବାକୁ ଚେଷ୍ଟାକଲେ । ସାମାନ୍ୟ ଇଙ୍ଗିତ ପାଇ ରାମନଙ୍କୁ ବିବାହ ପ୍ରସ୍ତାବ ଦେଲେ । ରାମନ ରାଜି ହେଲେ । ଏବେ ତାଙ୍କ ବାପାମାଙ୍କର ସମ୍ମତି ଲୋଡା ।

ଲୋକସୁନ୍ଦରୀ ବ୍ରାହ୍ମଣ କନ୍ୟା ହେଲେ ବି ଉଚ୍ଚବର୍ଗର ନଥିଲେ । ତେଣୁ ରାମନଙ୍କ ସମ୍ପର୍କୀୟମାନେ ଆପତ୍ତି ଉଠାଇଲେ । ହେଲେ ବି ରାମନଙ୍କ ବାପା ଉଦାର ମନା

ଥିଲେ । ପୁଅତ ବାହା ହେବ, ତା'ର ମନ ଅଛି, ଜାତି ତ ସମାନ ତେଣୁ ବର୍ଣ୍ଣକଥାକୁ ଏତେ ଧରିଲେ ନାହିଁ । କିନ୍ତୁ ରାମନଙ୍କ ମା ଅନ୍ୟମାନଙ୍କ ସହ ମିଳି ଆପତ୍ତି କରୁଥାନ୍ତି । ରାମନ କିନ୍ତୁ ଲୋକସୁନ୍ଦରୀଙ୍କୁ ବିଭା ହେବାପାଇଁ ଅଟଳ ରହିଲେ; ଅନ୍ୟମାନଙ୍କ ଚାପରେ ଓହରି ଗଲେ ନାହିଁ । ଆଜିକାଲି ଚାକିରିଆ ଯୁବକମାନେ ଯୌତୁକ ଦାବି କରୁଛନ୍ତି, ସେତେବେଳେ ବି ଯୌତୁକ ପ୍ରଥା ଥିଲା; କିନ୍ତୁ ରାମନ ବିନା ଯୌତୁକରେ ବାହା ହୋଇଥିଲେ ।

ପରେ କେତେବେଳେ କେମିତି କଥା ପଡେ – ଲୋକସୁନ୍ଦରୀଙ୍କୁ ଭଲପାଇ ରାମନ ବାହା ହୋଇଥିଲେ, ଏଥିପାଇଁ ଲୋକସୁନ୍ଦରୀଙ୍କ ଭଜନ ଦାୟୀ, ରାମଙ୍କ ସଦୃଶ ଅନ୍ୟ କେହି ନାହିଁ ଗାଇ ଗାଇ ସେ ରାମନଙ୍କୁ ମୁଗ୍ଧ କରି ଦେଇଥିଲେ । ଲୋକ ସୁନ୍ଦରୀ କିନ୍ତୁ ଭିନ୍ନ କଥା କହନ୍ତି । ସେ କହନ୍ତି – ସେତେବେଳେ ରାମନଙ୍କ ଚାକିରିରେ ଦରମା ଥିଲା ମାସକୁ ୨୫୦ଟଙ୍କା, କିନ୍ତୁ ବିବାହ ଭତ୍ତା ମିଳୁଥିଲା ମାସକୁ ୧୫୦ ଟଙ୍କା । ସେ ହୁଏତ ଟଙ୍କା ଲୋଭରେ ବାହା ହୋଇ ପାରିଥାନ୍ତି । ଏଥିରେ କେହି ପ୍ରତିବାଦ କରୁନଥିଲେ । କାରଣ ଲୋକସୁନ୍ଦରୀ ବି ଜାଣିଥିଲେ ଯେ ଅନ୍ୟ ଯାହାକୁ ବାହା ହୋଇଥିଲେ ମଧ ରାମନ ବିବାହ ଭତ୍ତା ପାଇଥାନ୍ତେ ।

ପ୍ରଫେସର ଭଗବନ୍ତମ୍ ଲେଖିଛନ୍ତି – ଲୋକସୁନ୍ଦରୀଙ୍କ ଦୈନନ୍ଦିନ ଜୀବନରେ ଏକମାତ୍ର ଧେୟ ଥିଲେ ରାମନ । ସେ କେବେ ନିଜର କୌଣସି କଥା ପାଇଁ ରାମନଙ୍କୁ ବାଧ କରି ନାହାନ୍ତି କି ତାଙ୍କ କାମରେ ବାଧା ଘଟାଇ ନାହାନ୍ତି । ତାଙ୍କ ସେବାଶୁଶ୍ରୂଷାରେ କେବେ ହେଲେ ତ୍ରୁଟି କରି ନାହାନ୍ତି ।

ଯିଏ ଯେତେବେଳେ ଘରକୁ ଆସିଲେ ତାଙ୍କର ଚର୍ଚ୍ଚାବର୍ଚ୍ଚା କରିଛନ୍ତି, ରାମନଙ୍କ ଉପରେ କିଛି ଚାପା ପଡିନାହିଁ । ଭାରତୀୟ ପରମ୍ପରା ଅନୁସାରେ ସେ ଜଣେ ବୋହୂ, ଗୃହିଣୀ ଓ ଅର୍ଦ୍ଧାଙ୍ଗିନୀ ଭାବେ ତାଙ୍କର ସମସ୍ତ ଦାୟିତ୍ୱ ତୁଲାଇଛନ୍ତି । ରାମନ କେବେ ଯଦି ତାଙ୍କ ଛାତ୍ର, ସହକର୍ମୀ ବା ବନ୍ଧୁଙ୍କ ଉପରେ ଚିଡି ଉଠୁଥିଲେ ସେ ପରାମର୍ଶ ଦେଇ ତାଙ୍କୁ ଶାନ୍ତ କରି ଦେଉଥିଲେ । ସେଥିପାଇଁ ପ୍ରଫେସର ରାମଶେଷନ କହିଥିଲେ – ଶ୍ରୀମତୀ ରାମନ ୬୩ ବର୍ଷକାଳ ଏକ ପ୍ରବଳ ପ୍ରଭଞ୍ଜନକୁ ଶାନ୍ତ କରାଇ ଘର ସମ୍ଭାଳି ଥିଲେ ।

ରାମନ ମାସକୁ ଟ ୪୦୦/- ଦରମା ପାଇ (ବିବାହ ଭତ୍ତା ସହିତ) କଲିକତାରେ ସହକାରୀ ଏକାଉଣ୍ଟାଣ୍ଟ ଜେନେରାଲ ଭାବେ ଯୋଗ ଦେଲେ । ତାଙ୍କ ସହିତ ଲୋକସୁନ୍ଦରୀ କଲିକତା ଆସିଲେ । ୧୯୦୭ରେ ଚାକିରୀରେ ଯୋଗ ଦେଉ ଦେଉ ରାମନ ବିଜ୍ଞାନ ଗବେଷଣା ଆରମ୍ଭ କଲେ । ଲୋକସୁନ୍ଦରୀ କହନ୍ତି ସେତେବେଳେ ସେ ନୂଆ ବାହା ହୋଇ ଆସିଥାନ୍ତି । ତାଙ୍କୁ କଠିନ ରୁଟିନ ଭିତରେ କାମ କରିବାକୁ ହେଉଥିଲା ।

ସକାଳ କାମ ସାରି ରାମନ ଭୋର ୫ଟା ୩୦ ବେଳକୁ ଆସୋସିଏସନକୁ ଗବେଷଣା କରିବାକୁ ବାହାରନ୍ତି, ସେଠୁ ୯ଟା ୩୦ ବେଳକୁ ଫେରନ୍ତି । ଗାଧୋଇ ଖାଆନ୍ତି । ସେ ତ ଖାଇବା ନୁହେଁ, ଯାହା ଦିଆଯାଏ ଟାଉଟାଉ କରି ଗିଳି ପକାନ୍ତି । କାରଣ କଲିକତାଭିତରେ ଯାଇ ତାଙ୍କୁ ଠିକ୍ ସମୟରେ ଅଫିସରେ ପହଞ୍ଚିବାକୁ ହେବ । ଅଧିକାଂଶ ଦିନ ତାଙ୍କୁ ଟାକ୍ସିରେ ଯିବାକୁ ପଡେ । ଉପରବେଳା ୫ଟାକୁ ସିଧା ଅଫିସରୁ ଆସୋସିଏସନକୁ ଯାନ୍ତି । ରାତିରେ ଫେରୁ ଫେରୁ ୯ଟା ୩୦ ବା ୧୦ଟା ବାଜିଥାଏ । ରବିବାର ଦିନସାରା ଆସୋସିଏସନ ଗବେଷଣାଗାରରେ ବିତାନ୍ତି ।

ସ୍ୱାମୀ ଗବେଷଣା ଓ ଅଫିସ କାମରେ ସବୁବେଳେ ବ୍ୟସ୍ତ । ରାତିରେ କେଇ ଘଣ୍ଟା କେବଳ ଘରେ ରହନ୍ତି, ଛୁଟି ଦିନ ଓ ରବିବାରଯାକ ଗବେଷଣାଗାରରେ କଟେ । ତଥାପି ନୂଆ ବାହା ହୋଇ ଆସିଥିବା ଲୋକସୁନ୍ଦରୀ ସ୍ୱାମୀଙ୍କର କାର୍ଯ୍ୟକଳାପରେ କୌଣସି ଆପତ୍ତି ନକରି ତାଙ୍କ କାମରେ ଲାଗିଥାନ୍ତି । ସ୍କୁଲରେ ଅଳ୍ପ କିଛି ପଢ଼ିଥିଲେ । ଘରେ ଏକୁଟିଆ ରହି ସେ ନିଜେ ନିଜେ ପଢ଼ିବା ଯୋଜନା କଲେ । ନିଜ ଚେଷ୍ଟାରେ ଇଂରାଜୀ ପଢ଼ିବା ଲେଖିବା ଛଡା ଇଂରାଜୀରେ କଥାବାର୍ତ୍ତା ମଧ୍ୟ କରିପାରିଲେ । କେବଳ ସ୍କୁଲରେ କିଛି ପଢ଼ିଥିବା ଗୋଟିଏ ନବବିବାହିତା ଝିଅ ପକ୍ଷେ ଏ କିଛି କମ୍ ସାଧନା ନୁହେଁ ।

ତାଙ୍କ ଇଂରାଜୀଜ୍ଞାନଦ୍ୱାରା ବିଲାତଲୋକଙ୍କ ପାଖରେ ସେ ନିଜକୁ ବେଶ ପ୍ରକାଶ କରି ପାରୁଥିଲେ । ମାକ୍ସବର୍ଣ୍ଣ ଓ ତାଙ୍କ ସ୍ତ୍ରୀଙ୍କ ସହିତ ତାଙ୍କର ଅତି ସୌହାର୍ଦ୍ଦ୍ୟ ଥିଲା । ଭଲ କଥାବାର୍ତ୍ତା କରି ନ ପାରୁଥିଲେ ସେ ଏତେ ଘନିଷ୍ଠତା ବଢ଼ାଇଥିଲେ କିପରି ? ରାମନ ନୋବେଲ ପୁରସ୍କାର ଆଣିବା ପାଇଁ ବିଲାତ ଗଲାବେଳେ ସେ ସଙ୍ଗରେ ଯାଇଥିଲେ । ନୋବେଲପୁରସ୍କାର ଉତ୍ସବ କିପରି ପାଳିତ ହେଲା ସେ ନିଜେ ତାହା ଲେଖି ଆଣିଥିଲେ । ତାଙ୍କ ବର୍ଣ୍ଣନାଚାତୁରି ଯେକୌଣସି ଉଚ୍ଚଶିକ୍ଷିତା ମହିଳାଙ୍କଠାରୁ ଆଦୌ ନ୍ୟୂନ ନଥିଲା ।

## କଲିକତାରୁ ବିଦାୟ

ଯେଉଁ କଲିକତା ରାମନଙ୍କୁ ଏତେବଡ କରାଇଲା ଏବଂ ରାମନ କଲିକତାକୁ ପୃଥିବୀ ବିଖ୍ୟାତ କରାଇଲେ ଅସମୟରେ ସେହି କଲିକତାକୁ ଛାଡିବାକୁ ହେଲା । ତାହା ହୋଇଥାଏ । ଯେଉଁଠି ଲୋକେ ଯେତେ ପ୍ରଶଂସା କରନ୍ତି ସେଇଠି ସେତିକି ଶତ୍ରୁ ବି ବାହାରନ୍ତି । ରାମନ ତ କେବଳ କଲିକତାର ହୋଇ ନଥିଲେ, ଦେଶର ବହୁ ଉର୍ଦ୍ଧ୍ୱକୁ ଉଠି ଯାଇଥିଲେ ।

ସମଗ୍ର ପୃଥିବୀର ସେ ଜଣେ ଅଗ୍ରଗଣ୍ୟ ବୈଜ୍ଞାନିକ ହୋଇ ଉଠିଥିଲେ । ତେଣୁ ସେ ପୃଥିବୀରେ ନାଁ କଲାପରି କାମ ବାଛୁଥିଲେ, ଆଉ ସେଇ କାମକୁ କିଏ ସୁରୁଖୁରୁରେ ତୁଲାଇବ ତାଙ୍କୁ ହିଁ ବାଛୁଥିଲେ । ସେଥିରୁ କିଏ କଲିକତାର, କିଏ ମାନ୍ଦ୍ରାଜର ବା କିଏ ବମ୍ବେର ତାହା ସେ ବିଚାର କରୁ ନଥିଲେ ।

ସ୍ଥାନୀୟ ଲୋକେ ଏସବୁ ସହନ୍ତେ କିପରି ? ଆସ୍ତେ ଆସ୍ତେ ଗୁଞ୍ଜରଣ ସୃଷ୍ଟି ହେଲା, ଅପାରଗମାନେ ମେଳି ବାନ୍ଧିଲେ, ଖବରକାଗଜରେ ଛାପିଲେ – ରାମନ କଲିକତାର ସ୍ୱାର୍ଥ ଦେଖୁନାହାନ୍ତି । ଜଣେ ଦକ୍ଷଲୋକଙ୍କ ଆଢୁଆଳରେ ରହି ଏସବୁ ଚକ୍ରାନ୍ତ ଓ କୁହୁଡି ସୃଷ୍ଟି କଲେ । ସମସ୍ତେ ତ ସାର୍ ଆଶୁତୋଷ ମୁଖର୍ଜି ବା ଡକ୍ଟର ଅମୃତଲାଲ ସରକାର ନୁହନ୍ତି ଯେ ମଣିଷ ଚିହ୍ନିବେ । ଅମଣିଷମାନେ ଭାବନ୍ତି ଯେ କୌଣସି ଅମଣିଷ ବି ମଣିଷ ହେବ । ଏଥିପାଇଁ ସେଠି ଯେଉଁ ମଣିଷ ଥିବେ ତାଙ୍କୁ ତଡି, ତାଙ୍କର ଅପପ୍ରଚାର କରି, କୌଣସି ଗୋଟିଏ ସ୍ଥାନୀୟ ଲୋକର ଡିଣ୍ଡିମ ପିଟିବାକୁ ହେବ । ଆଜି ବି ଏହି ଚାଲ୍ ଭାରତର କୋଣେ କୋଣେ ଦେଖିବାକୁ ମିଳୁଛି ।

କେତେକେ ଈର୍ଷା ପରାୟଣ, ସ୍ୱାର୍ଥପର, ଅପାରଗ ଓ ଅଯୋଗ୍ୟ ଲୋକ ଆଞ୍ଚଳିକତାର ଆନ୍ଦୋଳନ କରି ଯୋଗ୍ୟ ଲୋକଙ୍କୁ ସ୍ଥାନାନ୍ତର କରାଇ ଦିଅନ୍ତି; ଠିକ ଜାଲମୁଦ୍ରା ବଜାରରୁ ଯେପରି ଚଳନ୍ତି ମୁଦ୍ରାକୁ ହଟେଇ ଦେଇ ପ୍ରଥମେ ଅଚଳ କରାଇ ଦିଏ । ରାମନଙ୍କ ଉପରେ ଦୋଷାରୋପ କରାଗଲା ଯେ ସେ ବଙ୍ଗାଳୀ ଯୁବକମାନଙ୍କ ସ୍ୱାର୍ଥରକ୍ଷା କରୁନାହାନ୍ତି, କେବଳ ଦକ୍ଷିଣ ଭାରତର ଯୁବକମାନଙ୍କୁ ତାଲିମ କରି ଉପରକୁ ଉଠାଉଛନ୍ତି ।

ପ୍ରଫେସର କେଶୱାନି ରାମନଙ୍କ ସହଯୋଗୀଙ୍କର ଯେଉଁ ତାଲିକା ଦେଇଛନ୍ତି ସେଥିରେ ଥିବା ପ୍ରଥମ ୩୪ ଜଣ କୃତୀବ୍ୟକ୍ତିଙ୍କ ମଧ୍ୟରେ ୭ ଜଣ ହେଉଛନ୍ତି ବଙ୍ଗାଳୀ । ରାମନ କହନ୍ତି ସେ ବ୍ୟକ୍ତିର ବିଚାର ନକରି ଅଞ୍ଚଳର ବିଚାର କରିଥିଲେ ବିଜ୍ଞାନ ମାନଚିତ୍ରରେ କଲିକତା ଶୀର୍ଷସ୍ଥାନ ଦଖଲ କରି ନଥାନ୍ତା ।

କଲିକତାର ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନଚନ୍ଦ୍ର ରାୟ ରାମନଙ୍କୁ କଲିକତାର ଶ୍ରେଷ୍ଠ ନାଗରିକ ରୂପେ ଘୋଷଣା କରି ତାଙ୍କ ଭାଷଣରେ କହିଥିଲେ, ‘‘କଲିକତା ରାମନଙ୍କୁ ଆବିଷ୍କାର କରିଥିଲା ।’’ ଅନେକ କହନ୍ତି ‘‘ସାର୍ ଆଶୁତୋଷ ମୁଖର୍ଜି ରାମନଙ୍କୁ ଏଡେ ବଡ ବୈଜ୍ଞାନିକ କରାଇଲେ ।’’ ଟିକିଏ ଗହୀରେଇ ଚିନ୍ତା କଲେ ସ୍ପଷ୍ଟ ହୋଇଯିବ ଯେ କଲିକତା ବା ସାର୍ ଆଶୁତୋଷ ମୁଖର୍ଜି କେବଳ ନିମିତ୍ତ ମାତ୍ର । ଯେକୌଣସି ବଡ ଘଟଣା ପଛରେ ଅନେକ ଗୁଡିଏ ଛୋଟ ଛୋଟ ଘଟଣା ଥାଏ । ସେଥିରୁ ଯେକୌଣସି ଗୋଟିଏ ଏପଟ ସେପଟ ହୋଇଥିଲେ ସବୁ ଓଲଟପାଲଟ ହୋଇ ଯାଇଥାନ୍ତା ।

ମହେନ୍ଦ୍ରଲାଲ ସରକାର ଆସୋସିଏସନ ନ କରିଥିଲେ ରାମନ ସେଠାରେ ଛୁଟିଥାନ୍ତେ କିପରି ? ସେ ସେହି ସରକାରୀ କାମରେ ଦାନ୍ତ କାମୁଡ଼ି ପଡ଼ିଥାନ୍ତେ । ସେ ଯେଉଁଦିନ ବଉବଜାର ଷ୍ଟ୍ରିଟ୍‌ର ୨୧୦ ନମ୍ବର କୋଠରୀକୁ ଆସିଲେ ତାଙ୍କୁ ଅମୃତଲାଲ ସରକାର ଆଗ୍ରହରେ ଗ୍ରହଣ ନ କରିଥିଲେ ସେ ସେଠାରେ ପରୀକ୍ଷା କରିଥାନ୍ତେ କି ? ସମୁଦାୟ ବିଶ୍ରାମ ସମୟ ସେ ପରୀକ୍ଷାଗାରରେ ନ କଟାଇ ମହାମଉଜରେ କଲିକତା ସହରରେ ବୁଲାବୁଲି କରିଥିଲେ ସାର୍ ଆଶୁତୋଷ ମୁଖର୍ଜି ତାଙ୍କୁ ବା କାହିଁକି ଅଧ୍ୟାପକପଦ ଯାଚିଥାନ୍ତେ ? ତାଙ୍କୁ ସେ ଯେଉଁ ଅଧ୍ୟାପକପଦ ଯାଚିଥିଲେ ତାହା ରାମନଙ୍କ ମଙ୍ଗଳ ପାଇଁ ନା ବିଶ୍ୱବିଦ୍ୟାଳୟର ମଙ୍ଗଳ ପାଇଁ ? ରାମନ ଯଦି ମର୍ଯ୍ୟାଦା ଜଗି ଦିନରାତି ଖଟି ନଥାନ୍ତେ କେଉଁ କଲିକତା ରାମନଙ୍କୁ ଆବିଷ୍କାର କରିଥାନ୍ତା ? ଆମେ ଯେତେ ଯାହା କହିଲେ ମଧ୍ୟ ବ୍ୟକ୍ତି ତାହା ନିଜ ହାତମୁଠାରେ ତାହାର ଭାଗ୍ୟର ଚାବିକାଠି ଧରିଥାଏ ।

ତଥାପି ରାମନ ମାନନ୍ତି କଲିକତାରେ ଥିବା ସମୟରେ ପରିବେଶ ତାଙ୍କ ପାଇଁ ଅନୁକୂଳ ଥିଲା, ଲୋକେ ତାଙ୍କୁ ବହୁତ ଆଦର କରୁଥିଲେ ଓ ଜୀବନର ଶ୍ରେଷ୍ଠସମୟ ସେ କଲିକତାରେ ହିଁ ବିତାଇଥିଲେ । ୧୯୨୨ ମସିହାରେ ସେ ୨୨ଟି ଗବେଷଣା ପତ୍ର ଛପାଇ ଥିଲେ ।

ସେଇ କେତେ ବର୍ଷ ରାମନ ଯାହା କରି ପାରିଥିଲେ ଅବଶିଷ୍ଟ ଜୀବନରେ ଯେତେ ଅନୁକୂଳ ପରିସ୍ଥିତି ହେଲେ ମଧ୍ୟ ସେ ଆଉ ସେପରି କିଛି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରି ପାରିଲେ ନାହିଁ । ସେ ୧୯୦୭ରୁ ୧୯୩୩ ପର୍ଯ୍ୟନ୍ତ ଦୀର୍ଘ ୨୬ ବର୍ଷ କଲିକତାରେ କଟାଇ ଥିଲେ । ସେ ୧୮/୧୯ ବର୍ଷର ଯୁବକ ହୋଇ କଲିକତା ଆସିଥିଲେ, କଲିକତା ଛାଡ଼ିଲା ବେଳକୁ ତାଙ୍କୁ ୪୫ ବର୍ଷ ହୋଇଥିଲା । ତାଙ୍କ ଭାଷାରେ କହିଲେ ତାଙ୍କ ଯୌବନର ଆଶା ଓ ଦୁଃସାହସ ସେତେବେଳକୁ ଅଭିଜ୍ଞତାରେ ରୂପାନ୍ତରିତ ହୋଇଥିଲା । ପଦମର୍ଯ୍ୟାଦା ଓ ସମ୍ମାନ ତାଙ୍କ ଉପରେ ବୋଝ ହୋଇ ପଡ଼ିଥିବାରୁ ସେ କୌଣସି ସାହସିକ ପଦକ୍ଷେପ ନେବାକୁ କ୍ରମେ ଅସମର୍ଥ ହୋଇ ପଡୁଥିଲେ ।

ରାମନ ଚାହିଁଲେ ବର୍ଷେ ଛୁଟି ନେଇ ବାଙ୍ଗାଲୋର ଯିବେ, ଛୁଟି ମଞ୍ଜୁର ହେଲା ନାହିଁ, କୁହାଗଲା ସେ ଯଦି ଯିବେ ଇସ୍ତଫା ଦେଇ ଯାଆନ୍ତୁ । ଯେ ବିଜ୍ଞାନରେ ଭାରତରୁ ପ୍ରଥମ ଓ ଏସିଆରୁ ପ୍ରଥମ ହୋଇ ନୋବେଲପୁରସ୍କାର ପାଇଥିଲେ ସେ କଲିକତାର ଅଧ୍ୟାପକ ପଦରୁ ବାଧ ହୋଇ ଇସ୍ତଫା ଦେଲେ । ଅତି ଦୁଃଖିତ ହୃଦୟରେ ସେ କଲିକତା ଛାଡ଼ିଲେ ।

# ପରିଚ୍ଛେଦ-୬

## ବାଙ୍ଗାଲୋରରେ

ରାମନ ବାଙ୍ଗାଲୋରର ବିଖ୍ୟାତ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ (ଡାଇରେକ୍ଟର) ରୂପେ ନିଯୁକ୍ତି ପାଇଥାନ୍ତି । ଏହି ଗବେଷଣା କେନ୍ଦ୍ର ଇଣ୍ଡିୟାନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ ସାଇନ୍‌ସ ନାମରେ ବିଖ୍ୟାତ । ଜେ. ଏନ୍. ଟାଟା (ଜାମ୍‌ସେଦଜୀ ନୁସେରୱାନଜୀ ଟାଟା)ଙ୍କ ଦୂରଦୃଷ୍ଟି, ପୃଷ୍ଠପୋଷକତା ଓ ଅବଦାନରେ ଏହି ଅନୁଷ୍ଠାନ ୧୯୧୧ରେ ପ୍ରତିଷ୍ଠିତ ହୋଇଥିଲା । ଜେ.ଏନ୍. ଟାଟା ଦେଶରେ ବିଜ୍ଞାନ ଓ ବୈଷୟିକ ଜ୍ଞାନର ଅଭିବୃଦ୍ଧି ପାଇଁ ଏକ ଅନୁଷ୍ଠାନ ଗଢିବେ ବୋଲି ସର୍ବସାଧାରଣରେ ୧୮୯୮ରେ ଘୋଷଣା କଲେ ।

ଏହା କେଉଁଠି କଲେ ଭଲ ହେବ ଠିକଣା ହୋଇ ପାରିଲା ନାହିଁ । ମହୀଶୂର ମହାରାଜା ବାଙ୍ଗାଲୋରରେ ୩୦୦ ଏକର ଜମି ଦେଲେ, ଘର ପାଇଁ ୫ ଲକ୍ଷ ଟଙ୍କା ଦେବାକୁ ପ୍ରତିଶ୍ରୁତି ଦେଲେ ଏବଂ ବର୍ଷକୁ ୧ ଲକ୍ଷ ଟଙ୍କା ଅନୁଦାନ ଦେବେ ବୋଲି କହିଲେ । ଜଳବାୟୁ ଓ ପ୍ରାକୃତିକ ପରିବେଶ ଦୃଷ୍ଟିରୁ ବାଙ୍ଗାଲୋର ଅନୁପମ । ୧୯୦୪ରେ ଜେ.ଏନ୍. ଟାଟାଙ୍କର ମୃତ୍ୟୁ ହେଲା । ୧୯୦୫ରେ ବ୍ରିଟିଶ୍ ସରକାର ବାଙ୍ଗାଲୋରରେ ଅନୁଷ୍ଠାନ ଗଢ଼ିବାକୁ ଅନୁମତି ଦେଲେ । ୧୯୧୧ରେ ଡକ୍ଟର ମରିସ ଟ୍ରାଭର୍ସ, ଏଫ୍.ଆର.ଏସ୍. ବିଲାତରୁ ଆସି ଏହାର ନିର୍ଦ୍ଦେଶକ ହେଲେ । ୧୯୧୧ରେ ସାଧାରଣ ଓ ପ୍ରୟୋଗ ରସାୟନ, ଜୈବ ରସାୟନ ଏବଂ ଇଲେକଟ୍ରୋ-ଟେକ୍‌ନୋଲୋଜିରେ ୩ଟି ବିଭାଗ ସହିତ ଇନ୍‌ଷ୍ଟିଚ୍ୟୁଟ୍ ଗଢ଼ା ହେଲା ।

ପରେ ଜୀବ-ରସାୟନ ବା ବାୟୋକେମିଷ୍ଟ୍ରି ବିଭାଗ ଖୋଲିଲା । ଏହି ଅନୁଷ୍ଠାନରେ ମୁଖ୍ୟତଃ ଶିକ୍ଷାଦାନ କରାଯାଉଥିଲା, ରସାୟନ ବିଭାଗ ଗୁଡ଼ିକରେ ଯାହା କିଛି ଗବେଷଣା ହେଉଥିଲା । ବିଲାତର ସାହେବମାନେ ଏହାର ପରିଚାଳନାରେ ମୁଖ୍ୟ ଅଂଶ ଗ୍ରହଣ କରୁଥିଲେ । ଏଠାକାର ଭାରତୀୟ ପ୍ରଫେସରମାନଙ୍କୁ ମାସକୁ ୧୨୫୦-୫୦-୧୫୦୦ ଟଙ୍କା ହାରରେ ଦରମା ଓ ବିଲାତ ପ୍ରଫେସରଙ୍କୁ ଆଉ ଅଧିକା ୫୦୦ ଟଙ୍କା ଦିଆଯିବ ବୋଲି ଘୋଷଣା ହୋଇଥିଲା ।

ଭାରତୀୟମାନେ ଏତେ ଅଧିକ ଦରମା ନେବା ଉଚିତ ନୁହେଁ ବୋଲି ପରିଚାଳନା ସମିତିର ସଭ୍ୟ ଡକ୍ଟର ମେଘନାଦ ସାହା ଓ ଟାଟାଙ୍କ ସମ୍ପର୍କୀୟ ଭାଭା ଆପତ୍ତି କରିଥିଲେ । ସେମାନଙ୍କ ମତରେ ଭାରତୀୟ ଅଧ୍ୟାପକମାନେ ଜାତୀୟ ମନୋଭାବ ନେଇ ଅଳ୍ପ ବେତନରେ କାର୍ଯ୍ୟ କରିବା ଉଚିତ ।

ଯାହାହେଉ ରାମନ ଯୋଗ ଦେଲା ବେଳକୁ ଇନ୍‌ଷ୍ଟିଚ୍ୟୁଟର ଗବେଷଣାସ୍ତର ଅତି ନିମ୍ନରେ ଥିଲା । ପଦାର୍ଥବିଜ୍ଞାନ ବିଭାଗ ଖୋଲି ନ ଥିଲା । ରାମନ ପଦାର୍ଥ ବିଜ୍ଞାନ ପ୍ରଫେସର ଓ ପ୍ରଥମ ଭାରତୀୟ ଡିରେକ୍ଟର ହୋଇ ୧୯୩୩ ଏପ୍ରିଲ ମାସରେ ଯୋଗ ଦେଲେ ।

ପଦାର୍ଥବିଜ୍ଞାନ ଖୋଲିବା ପାଇଁ ମୂଳରୁ ମାତ୍ର ୧ ଲକ୍ଷ ଟଙ୍କା ଓ ବର୍ଷକୁ ୨୫ ହଜାର ଟଙ୍କା ମଞ୍ଜୁର ହୋଇଥିଲା । ତେଣୁ ଯୋଗ ଦେଉ ଦେଉ ସେ ବଜେଟ ଅଦଳବଦଳ କରି ପଦାର୍ଥବିଜ୍ଞାନର ଅନୁଦାନ ବଢ଼ାଇବାକୁ ଉଦ୍ୟମ କଲେ । ଏଥିପାଇଁ ଅନ୍ୟ ବିଭାଗର ଅନୁଦାନ କାଟିବାକୁ ହେଲା । ଯେଉଁ ପ୍ରଫେସରମାନେ ଆରାମରେ ଥିଲେ ସେମାନେ ଏଥିପାଇଁ ଚିଡି ଉଠିଲେ ।

ରାମନଙ୍କ ନାଁ ଶୁଣି ଅନେକ ଛାତ୍ର ଗବେଷଣା ଓ ଅଧ୍ୟୟନ ପାଇଁ ଧାଡି ବାନ୍ଧିଲେ । ସବୁ ଭଲ ଛାତ୍ରଙ୍କର ଲକ୍ଷ୍ୟ ହେଲା ରାମନଙ୍କ ଅନୁଗ୍ରହ ଲାଭ କରି ଗବେଷଣା କରିବା । ବାଙ୍ଗାଲୋରର ବାୟୁମଣ୍ଡଳ ଓ ଗଳିକନ୍ଦିରେ କେବଳ ରାମନଙ୍କ ନାମ ଉଚ୍ଚାରିତ ହେବାକୁ ଲାଗିଲା । ଆଗରୁ ଯେଉଁ ଉଚ୍ଚ ବେତନଭୋଗୀ ଅଧ୍ୟାପକମାନେ ଏକଚାଟିଆ ସମ୍ମାନର ଅଧିକାରୀ ଥିଲେ ସେମାନେ ଏବେ ଈର୍ଷାରେ ଖାଲି ଜଳିଲେ ।

ଭାରତୀୟଙ୍କ କଥା ପଚାରେ କିଏ ? ଏପରିକି ବିଲାତି ପ୍ରଫେସର ୱାଟସନ ଇସ୍ତଫା ଦେଲେ । ଗବେଷଣା ନକରି କେବଳ ପଢ଼ାପଢ଼ି କରିଦେଇ ଯେଉଁମାନେ ଚୁପ ରହୁଥିଲେ ରାମନ ସେମାନଙ୍କୁ ବସେଇ ଉଠେଇ ଦେଲେନି । ଏହିପରି ଯେତେ ମଧ୍ୟମ ଧରଣର ଅଧ୍ୟାପକ ଥିଲେ ସେମାନେ ଭିତରେ ଭିତରେ ରାମନଙ୍କ ବିରୋଧରେ ମେଳି ବାନ୍ଧିବାକୁ ଆରମ୍ଭ କଲେ ।

ସେମାନଙ୍କ ସୁଯୋଗକୁ ରାମନ ଆଉ ଗୋଟିଏ କାର୍ଯ୍ୟରେ ହାତ ଦେଇ ବସିଲେ । ଦେଶ ପକ୍ଷେ ଏହା ଦୁର୍ଯୋଗ ଯେ ପରିଚାଳନା ସମିତି ରାମନଙ୍କର ଏ ମହାନ୍ କାର୍ଯ୍ୟକୁ ଭୁଲ ବୁଝିଲା । ଆମ ଦେଶର ଯୁବକମାନେ ଉଚ୍ଚ ଧରଣର ଗବେଷଣା ପାଇଁ ବିଲାତ ଯାଉଥିଲେ । ସେଠାରେ ଭଲ କାମ ମଧ୍ୟ କରୁଥିଲେ । ସେଠାକାର ପରିବେଶ ଭିନ୍ନ । ଦେଶକୁ ଫେରିଲେ ହାତ ବାନ୍ଧି ବସି ଯାଉଥିଲେ ।

ଖାଲି ସେତିକି ନୁହେଁ ଏଠି ବିଲାତ ପରିବେଶ ନାହିଁ ବୋଲି ଚିତ୍କାର କରୁଥିଲେ । ଫଳରେ ଏଠା ଯୁବକମାନେ ତାଙ୍କଠାରୁ ପ୍ରେରଣାପାଇ ଗବେଷଣା କରିବେ କ'ଣ

ଓଲଟା ବିଲାତ ଯିବାପାଇଁ ହକହକ ହେଉଥିଲେ । ଯେଉଁମାନେ ବିଲାତରୁ ଫେରୁଥିଲେ ତାଙ୍କୁ ସରକାର ଚୁପ୍ କରିବାପାଇଁ ବଡ ବଡ ଚାକିରି ହାବୁଡେଇ ଦେଉଥିଲେ ।

ଏଭଳି ମନୋଭାବ ଦୂର କରିବା ପାଇଁ ରାମନ ସେତେବେଳେ ଏକ ଯୋଜନା କରିଥିଲେ । ଜର୍ମାନୀରେ ହିଟଲରଙ୍କ ଦ୍ୱାରା ଅପମାନିତ ଓ ନିର୍ଯ୍ୟାତିତ ହୋଇ ଅନେକ ବିଶିଷ୍ଟ ବୈଜ୍ଞାନିକ ଜର୍ମାନୀ ଛାଡି ଅନ୍ୟ ଆଡେ ପଳାଉଥିଲେ । ରାମନ ଚାହୁଁଥିଲେ ତାଙ୍କ ଅନୁଷ୍ଠାନଟି ପୃଥିବୀରେ ଶ୍ରେଷ୍ଠ ବିବେଚିତ ହେଉ । ତେଣୁ ସେ ମାକ୍ସବର୍ଣ୍ଣ, ସ୍ରଡିଞ୍ଜର, ହିଭସେ, ଏୱାଲ୍ଡ, କୁହ୍ନ, ଭି.ଏମ୍. ଗୋଲଡସ୍ମିଟଙ୍କ ସହ ଯୋଗାଯୋଗ କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକ ପରେ ନୋବେଲ ପୁରସ୍କାର ପାଇଲେ । ରାମନ ଭାବୁଥିଲେ ଭାରତୀୟ ଯୁବକମାନେ ବିଲାତ ନଯାଇ ନିଜ ଦେଶରେ ବିଲାତ ସୁବିଧା ପାଇଲେ ପରେ ମଧ୍ୟ ସେମିତି ସକ୍ରିୟ ଓ ଉତ୍ସାହୀ ହୋଇ ଗବେଷଣା ଚାଲୁ ରଖିବେ ।

ରାମନଙ୍କ ଚେଷ୍ଟାରେ ୧୯୩୫ରେ ମାକ୍ସବର୍ଣ୍ଣ ତାଙ୍କ ସ୍ତ୍ରୀ ହେଡି ବର୍ଣ୍ଣଙ୍କ ସହିତ ଅଳ୍ପ କେତେମାସ ପାଇଁ ବାଙ୍ଗାଲୋର ଆସିଥିଲେ । ସେ ଇନ୍‌ଷ୍ଟିଚ୍ୟୁଟରେ ଗବେଷଣା, ବକ୍ତୃତା ଓ ଅଧ୍ୟାପନା କରି ଏ ସ୍ଥାନକୁ ଆଦରି ନେଇଥିଲେ । ରାମନ ତାଙ୍କୁ ସ୍ଥାୟୀ ପ୍ରଫେସର ଭାବେ ନିଯୁକ୍ତି ଦେବାକୁ ପରିଚାଳନା ସମିତିକୁ ଅନୁରୋଧ କଲେ ।

ସମିତିର ଅଧିବେଶନରେ ଜଣେ ବ୍ରିଟିଶ୍ ପ୍ରଫେସର ଆଷ୍ଟନ (ଇନ୍‌ଷ୍ଟିଚ୍ୟୁଟରେ ଇଲେକ୍‌ଟ୍ରିକାଲ ଇଂଜିନୟରିଂର ପ୍ରଫେସର) ଅସଙ୍ଗତ ଭାଷାରେ ଗୁଡିଏ ଆପତ୍ତି ଉଠାଇଲେ । ତାଙ୍କ ମତରେ ଜର୍ମାନୀରୁ ବିତାଡିତ ବିଶ୍ୱାସଘାତକ ଓ ଦ୍ୱିତୀୟ ଶ୍ରେଣୀର ବୈଜ୍ଞାନିକ ମାକ୍ସବର୍ଣ୍ଣଙ୍କୁ ଇନ୍‌ଷ୍ଟିଚ୍ୟୁଟରେ ରଖିଲେ କ୍ଷତି ହେବ । ପୃଥିବୀବିଖ୍ୟାତ ମାକ୍ସବର୍ଣ୍ଣପରେ ବିଶିଷ୍ଟ ପଦାର୍ଥତତ୍ତ୍ୱବିତ ଭାବେ ୧୯୫୪ରେ ନୋବେଲପୁରସ୍କାର ବିଜେତା ହେଲେ । ମାକ୍ସବର୍ଣ୍ଣ ଅପମାନିତ ହେବାରୁ ଅନ୍ୟମାନଙ୍କ କଥା କେବଳ ଫାଇଲରେ ରହିଗଲା ।

ତାପରେ ମଧ୍ୟମଧରଣର ବୈଜ୍ଞାନିକମାନେ ହୀନଚକ୍ରାନ୍ତ କରି ବ୍ରିଟଶ୍ ତଦନ୍ତ କମିଟିଦ୍ୱାରା ରାମନଙ୍କୁ ଡିରେକ୍ଟର ପଦରୁ ତଡିଲେ । ସେମାନଙ୍କର ଯୋଜନା ଥିଲା ଏକଲକ୍ଷ ଟଙ୍କା ଦେଇ ରାମନଙ୍କୁ ଇନ୍‌ଷ୍ଟିଚ୍ୟୁଟ୍‌ରୁ ବିଦା କରି ଦେଇଥାନ୍ତେ । ଶ୍ୟାମାପ୍ରସାଦ ମୁଖର୍ଜୀଙ୍କ ଭଳି ଲୋକ ଏହି କୁଚକ୍ରୀ ଗୋଷ୍ଠୀର ମୁଖପାତ୍ର ହୋଇ ଏଭଳି ହୀନକାର୍ଯ୍ୟ ପାଇଁ ଜିଦ୍ ଧରିଥିଲେ । ଯୋଗକୁ ମାକ୍ସବର୍ଣ୍ଣ ବିଲାତର ଲର୍ଡ ରଦରଫୋର୍ଡଙ୍କୁ ବାରମ୍ବାର ଚିଠି ଲେଖି ଭାରତର ଏ ଦୁରବସ୍ଥାକୁ ସୁଧାରି ଦେଲେ । ରାମନ ଡିରେକ୍ଟରପଦରୁ ଓହରି ଆସି କେବଳ ପଦାର୍ଥ ବିଜ୍ଞାନ ପ୍ରଫେସର ହୋଇ ରହିଲେ ।

ମାକ୍ସବର୍ଣ୍ଣ ଲେଖିଛନ୍ତି – ରାମନ କଠିନ ପରିଶ୍ରମ କରୁଥିଲେ, ଅତି ଉତ୍ସାହୀ,

ନିଷ୍ଠାପର ଓ କାର୍ଯ୍ୟଦକ୍ଷ ଥିଲେ । ତାଙ୍କର ଦୋଷ ହେଲା- ଗଭୀର ଆତ୍ମବିଶ୍ୱାସ । ନିଜ ଉପରେ ସେ ଏତେ ଅଧିକ ଭରସା ରଖିଥିଲେ ଯେ ଅନ୍ୟମାନଙ୍କ ପରାମର୍ଶ ଓ ବିଚାରକୁ ସହଜରେ ଗ୍ରହଣ କରି ପାରୁ ନ ଥିଲେ । ଫଳରେ ତାଙ୍କ ଅଜାଣତରେ ଅନ୍ୟମାନେ ଆଘାତ ହୋଇ ଯାଉଥିଲେ । ପରେ ସେମାନେ କ୍ଷୁବ୍ଧ ହୋଇ ତାଙ୍କ ବିରୋଧରେ ଫୁସୁରୁଫାସର ହେଉଥିଲେ ।

ରାମନଙ୍କ କାର୍ଯ୍ୟ କରିବା ଢଙ୍ଗରେ କେଉଁଠି କ'ଣ ଭୁଲ ହେଉଛି ତାକୁ ସେମାନେ ଖୋଜି ବୁଲୁଥିଲେ । ରାମନଙ୍କ ଜିଦ୍, ଜିଗର ଓ ଭାବପ୍ରବଣତା ବେଳେ ବେଳେ ତାଙ୍କୁ ଏପରି ଅଡୁଆ ପରିସ୍ଥିତିରେ ପକାଇ ଦେଉଥିଲା । ରାମନଙ୍କର ମୁଖ୍ୟ ଲକ୍ଷ୍ୟ ଥିଲା – ଇନ୍‌ଷ୍ଟିଚ୍ୟୁଟ୍‌କୁ ସେ ଉତ୍କର୍ଷତାର ଶିଖରରେ ପହଞ୍ଚାଇବେ । ଉତ୍‌କୃଷ୍ଟତାର ଅଭିଳାଷ ତାଙ୍କୁ ଶେଷରେ ଏପରି ଅପଦସ୍ଥ କଲା ।

୧୯୩୮ ଏପ୍ରିଲ ୧ରୁ ସେ ଡିରେକ୍ଟରପଦରୁ ଇସ୍ତଫା ଦେଇ କେବଳ ପଦାର୍ଥବିଜ୍ଞାନ ପ୍ରଫେସର ହୋଇ ରହିଲେ । ଏଥିପାଇଁ କୌଣସି ଅନୁଶୋଚନା ନ କରି ପୂର୍ବପରି ନିଷ୍ଠା ଓ ଆଗ୍ରହର ସହିତ ସେ ତାଙ୍କର ଗବେଷଣା ଓ ଅଧ୍ୟାପନା କାର୍ଯ୍ୟ ଚୁଲାଇବାକୁ ଲାଗିଲେ ।

ପ୍ରତିଦିନ ସକାଳ ୬ଟାରେ ସେ ବିଭାଗର ଗବେଷଣାଗାରକୁ ଆସନ୍ତି । ୯ଟା ଯାଏ ପ୍ରତ୍ୟେକ ଛାତ୍ରଙ୍କର ସୁବିଧା ଅସୁବିଧା ବୁଝନ୍ତି । ପରୀକ୍ଷାର ଉନ୍ନତି ପାଇଁ କ'ଣ କରି ହେବ ଆଲୋଚନା କରନ୍ତି, ପରାମର୍ଶ ଦିଅନ୍ତି । ୯ଟାରେ ବସାକୁ ଫେରି ଖାଇବା ସଙ୍ଗେ ସଙ୍ଗେ ୧୦ଟା ବେଳକୁ ଡିରେକ୍ଟର ଅଫିସକୁ ଆସୁଥିଲେ । ଏବେ ଅଫିସକୁ ନଯାଇ କେବଳ ଯାହା ଡିପାର୍ଟମେଣ୍ଟକୁ ଆସିଲେ ।

ସପ୍ତାହରେ ୨/୩ଥର ସେମିନାର କରନ୍ତି । ତାଙ୍କ ପାଖରେ ଗବେଷଣା କରୁଥିବା ଛାତ୍ରମାନେ ସେମାନଙ୍କ ଗବେଷଣାରେ କେତେ ଦୂର ଆଗେଇଲେଣି ସେଠାରେ ଆଲୋଚିତ ହୁଏ । ସଂଧ୍ୟା ୭ଟାରେ କୌଣସି ଛାତ୍ରଙ୍କ ସହ ମିଶି ସାନ୍ଧ୍ୟଭ୍ରମଣରେ ଯାନ୍ତି ।

୧୯୪୮ ମସିହାରେ ଅବସର ନେବା ପର୍ଯ୍ୟନ୍ତ ସେ କେବଳ ପ୍ରଫେସର ହୋଇ ରହିଲେ । ସେହି ୧୦ବର୍ଷ ଭିତରେ ସେ ପଦାର୍ଥବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ସଫଳତାର ସହିତ ବିଭିନ୍ନ ଗବେଷଣା କରିଥିଲେ । ସେଗୁଡିକ ହେଲା – ପାରସ୍ୱନିକ ବିଜ୍ଞାନ, ବ୍ରିଲୟନ ବିଚ୍ଛୁରଣ, ଏକ୍‌ସରେ ବିଚ୍ଛୁରଣ, ହୀରକର ପଦାର୍ଥବିଜ୍ଞାନ ଏବଂ ଲାଟିସ୍ ଗତିବିଜ୍ଞାନ । ଆଲୋକ ବିଚ୍ଛୁରଣ ପରୀକ୍ଷା ମଧ୍ୟ ପୂର୍ବଭଳି ଚାଲୁ ରହିଥିଲା ।

ଇନ୍‌ଷ୍ଟିଚ୍ୟୁଟ୍‌ରେ ୧୫ ବର୍ଷ ରହି ସେ ଯେତେ ଯାହା ଗବେଷଣା କରିଥିଲେ ତା ମଧ୍ୟରେ ପାରସ୍ୱନିକ ଗବେଷଣା ତାଙ୍କର ସର୍ବଶ୍ରେଷ୍ଠ ଅବଦାନ । ତରଳ ମଧ୍ୟରେ ପାରସ୍ୱନିକ ତରଙ୍ଗ (ଅଶ୍ରାବ୍ୟ ଧ୍ୱନି ତରଙ୍ଗ) ପଠାଇଲେ ସେହି ତରଳ ପଦାର୍ଥ ମଧ୍ୟରେ ସାନ୍ଦ୍ରତା କ୍ରମାନ୍ୱୟରେ କମ୍ ବେଶୀ ହେଉଥାଏ ।

ପାରସ୍ୱନିକ ତରଙ୍ଗ ପଥ ସହ ସମକୋଣ କରି ଆଲୋକ ତରଳ ମଧ୍ୟକୁ ପ୍ରବେଶ କଲେ ଆଲୋକର ପ୍ରକୀର୍ଣ୍ଣନ ହୁଏ । ଏହି ଆଲୋକ ପ୍ରକୀର୍ଣ୍ଣନ ହେତୁ ଯେଉଁ ଫ୍ରିଞ୍ଜସବୁ ଦେଖାଯାଉଥିଲା ତାକୁ କେହି ସନ୍ତୋଷଜନକଭାବେ ବୁଝାଇ ପାରୁ ନଥିଲେ । ରାମନ ତାଙ୍କ ସହଯୋଗୀ ନଗେନ୍ଦ୍ରନାଥଙ୍କ ସହ ମିଶି ଏହାକୁ ବୁଝାଇଥିଲେ । ଏହି ଗାଣିତିକ ସମାଧାନକୁ ରାମନ-ନାଥ ତତ୍ତ୍ୱ କୁହାଯାଏ ।

ବାଙ୍ଗାଲୋରରେ ଥିଲାବେଳେ ରାମନଙ୍କର ଅନ୍ୟ ଦୁଇଟି ପ୍ରଧାନ ଅବଦାନ ହେଲା – ଇଣ୍ଡିୟାନ୍ ଏକାଡେମି ଅଫ୍ ସାଇନ୍ସ ଓ ରାମନ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍ । ଭାରତୀୟ ବୈଜ୍ଞାନିକଙ୍କ ମଧ୍ୟରେ ଭାବ ଆଦାନପ୍ରଦାନ ପାଇଁ ସେ ପ୍ରଥମ ଅନୁଷ୍ଠାନଟି ଗଢ଼ିଥିଲେ । ନିଜେ ଅବସର ନେଲା ପରେ ଗବେଷଣା ଚାଲୁ ରଖିବା ପାଇଁ ସେ ଦ୍ୱିତୀୟ ଅନୁଷ୍ଠାନଟି ଗଢ଼ିଥିଲେ ।

## ଇଣ୍ଡିୟାନ୍ ଏକାଡେମି ଅଫ୍ ସାଇନ୍‌ସେସ

ରାମନ ବାଙ୍ଗାଲୋରକୁ ଆସି ୧୯୩୪ ଏପ୍ରିଲ ୨୭ରେ ଏକ ବୈଜ୍ଞାନିକ ସଂଘ ଗଢ଼ିଲେ । ଏହାର ନାମ ରଖାଗଲା "ଇଣ୍ଡିୟାନ୍ ଏକାଡେମି ଅଫ୍ ସାଇନ୍‌ସେସ ।" ସମଗ୍ର ଭାରତର ଖ୍ୟାତନାମା ବୈଜ୍ଞାନିକମାନଙ୍କୁ ଏହାର ସଭ୍ୟଭୁକ୍ତ କରାଗଲା । ବିଶେଷତଃ ମେଧାବୀ ଯୁବ ବୈଜ୍ଞାନିକମାନଙ୍କୁ ସଭ୍ୟ କରିବାପାଇଁ ଅଧିକ ଧ୍ୟାନ ଦିଆଗଲା । ରାମନ ଆଜୀବନ ୧୯୩୪ ରୁ ୧୯୭୦ ଯାଏ ଏହାର ସଭାପତି ହୋଇ ରହିଲେ ।

କୌଣସି ଯୁବକଙ୍କ ମଧ୍ୟରେ କିଛି ମୌଳିକ ସୃଜନଶୀଳତା ଜଣା ପଡିଲେ ତାକୁ ରାମନ ନିଜେ ଉତ୍ସାହିତ କରୁଥିଲେ ଓ ତାଙ୍କ ବିଷୟକୁ ସଭାପତି ଅଭିଭାଷଣରେ ସ୍ୱତନ୍ତ୍ର ଭାବେ ଉଲ୍ଲେଖ କରୁଥିଲେ । ଏହି ସଂଘର ବାର୍ଷିକ ଅଧିବେଶନ ବିଶେଷତଃ ବିଶ୍ୱବିଦ୍ୟାଳୟ ଥିବା ସ୍ଥାନରେ ହେଉଥିଲା । ବିଭିନ୍ନ ସହରରେ ଅଧିବେଶନ ହେଉଥିବାରୁ ବିଶିଷ୍ଟ ବୈଜ୍ଞାନିକମାନଙ୍କ ସହିତ ଆଲୋଚନା କରିବାକୁ ବିଭିନ୍ନ ଅଞ୍ଚଳର ଯୁବଛାତ୍ରମାନେ ସୁଯୋଗ ପାଉଥିଲେ ।

ସଂଘର ପ୍ରଥମ ଆନୁଷ୍ଠାନିକ ଉତ୍ସବ ୧୯୩୪ ଜୁଲାଇ ୩୧ରେ ଅନୁଷ୍ଠିତ ହୋଇଥିଲା । ସେଥିରେ ଦେଶର ବଛା ବଛା ବୈଜ୍ଞାନିକମାନଙ୍କୁ ଫେଲୋ (ସଭ୍ୟ) ରୂପେ ମନୋନିତ କରାଯାଇଥିଲା । ଅବଶ୍ୟ ଏହି ଫେଲୋମାନେ ରାମନଙ୍କର ଏକାନ୍ତ ଅନୁଗତ ଥିଲେ ।

ପ୍ରତିବର୍ଷ ବିଭିନ୍ନ ସ୍ଥାନରେ ବାର୍ଷିକଉତ୍ସବ ହେଉଥିଲା । ସେଥିପାଇଁ ରାମନଙ୍କ ବିରୋଧୀମାନେ ଥଟ୍ଟାରେ ଏହାକୁ ରାମନଙ୍କ ସର୍କସ ବୋଲି କହୁଥିଲେ । ସେ ଯାହା ହେଉନା କାହିଁକି, ପ୍ରତି ଅଧିବେଶନରେ ରାମନଙ୍କ ସଭାପତି ଅଭିଭାଷଣ ମୁଖ୍ୟ

ଆକର୍ଷଣ ଥିଲା । ନୂଆ ନୂଆ ବୈଜ୍ଞାନିକମାନଙ୍କୁ ଫେଲୋ ବଛା ହେଉଥିଲା । ବିଦେଶରୁ ପ୍ରାୟ ୪୦ରୁ ଊର୍ଦ୍ଧ୍ୱ ବିଶିଷ୍ଟ ବୈଜ୍ଞାନିକମାନଙ୍କୁ ଫେଲୋ ମନୋନୀତ କରାଯାଉଥିଲା ।

ଅଧିବେଶନରେ ହେଉଥିବା ସେମିନାର, ସମ୍ମାନ ଓ ଜନପ୍ରିୟ ଭାଷଣ ଅତି ଶିକ୍ଷଣୀୟ ହେଉଥିଲା । ଯୁବକମାନେ ବାସ୍ତବିକ ଏଭଳି ସୁଯୋଗ ପାଇଁ ଗବେଷଣା କରିବାକୁ ଉତ୍ସାହିତ ହେଉଥିଲେ । ଏହି ସଂଘର ମୁଖ୍ୟ ପତ୍ରିକା ଦୁଇ ଭାଗରେ ବିଭକ୍ତ ହୋଇ ପ୍ରକାଶିତ ହେଉଥିଲା । ସେକ୍ସନ 'ଏ' ବା ପ୍ରଥମ ଭାଗରେ ଭୌତିକ ବିଜ୍ଞାନ ଏବଂ ସେକ୍ସନ 'ବି' ବା ୨ୟ ଭାଗରେ ଜୀବବିଜ୍ଞାନର ଗବେଷଣା ପତ୍ର ସ୍ଥାନ ପାଉଥିଲା । ଏହି ପତ୍ରିକାର ନାଁ-ଥିଲା ପ୍ରୋସିଡିଂସ ଅଫ୍ ଇଣ୍ଡିୟାନ ଏକାଡେମି ଅଫ୍ ସାଇନ୍‌ସେସ । ପତ୍ରିକା ପ୍ରକାଶନ ନିୟମିତ ହେଉଥିଲା ଓ ରାମନଙ୍କ ଖ୍ୟାତି ପାଇଁ ଏହା ପୃଥିବୀ ବିଖ୍ୟାତ ହୋଇଥିଲା ।

ଏହି ପତ୍ରିକା ଛଡା ପ୍ରତି ପନ୍ଦର ଦିନରେ ଅନ୍ୟ ଏକ ପତ୍ରିକା ପ୍ରକାଶିତ ହେଉଥିଲା । ଏହା ଲଣ୍ଡନର ବିଖ୍ୟାତ ପତ୍ରିକା ନେଚର ଢାଞ୍ଚାରେ ଛପା ହେଉଥିଲା । ଏହାର ନାମ ଥିଲା 'କରେଣ୍ଟ ସାଇନ୍‌ସ' । ଏହା ୧୯୩୨ରୁ ପ୍ରତିଷ୍ଠିତ ହୋଇଥିଲା । ଏହି ପତ୍ରିକାଗୁଡିକୁ ବଞ୍ଚାଇ ରଖି ନିୟମିତ ପ୍ରକାଶ କରିବାକୁ ରାମନ ସବୁବେଳେ ଜିଗର କରୁଥିଲେ । ତାଙ୍କ ମତରେ ଭାରତୀୟ ବିଜ୍ଞାନର ପ୍ରକୃତ ପରିଚାୟକ ହେବ ଏହି ପତ୍ରିକାଗୁଡ଼ିକ । ସେଥିପାଇଁ ସେ ତାଙ୍କର ସର୍ବୋତ୍କୃଷ୍ଟ ଗବେଷଣାକୁ ଏଥିରେ ଛପାଉଥିଲେ ।

ଇଣ୍ଡିୟାନ୍ ଏକାଡେମି ଅଫ୍ ସାଇନ୍‌ସେସ୍‌ର ବାର୍ଷିକ ଅଧିବେଶନ ୧୯୪୭ ମସିହାରେ କଟକଠାରେ ଅନୁଷ୍ଠିତ ହୋଇଥିଲା । ଖ୍ୟାତନାମା ଉଦ୍ଭିଦ ବିଜ୍ଞାନୀ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏହି ଅଧିବେଶନରେ ବିଶେଷ ସହଯୋଗ କରିଥିଲେ । ସେହି ବର୍ଷ କଟକରେ ତିନୋଟି ବିଷୟରେ ସଂପାନ ହୋଇଥିଲା – (୧) କ୍ରିଷ୍ଟାଲର କଂପନ ବର୍ଣ୍ଣାଳୀ, (୨) ଫସଲ ଉତ୍ପାଦନରେ ଉଦ୍ଭିଦ-ଫିଜିଓଲଜିର ଭୂମିକା, (୩) ଧାନର ବୈଷୟିକ ବିଜ୍ଞାନ ଓ ଜୈବ ରସାୟନ ।

## ରାମନ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍

ରାମନ ଦେଖିଲେ ତାଙ୍କୁ ଦିନେ ଇନ୍‌ଷ୍ଟିଚ୍ୟୁଟ୍‌ରୁ ବିଦାୟ ନେବାକୁ ହେବ । ଅବସର ସମୟ ପାଖେଇ ଆସୁଛି । ତାପରେ ସେ କରିବେ କ'ଣ ? ଅବସରପ୍ରାପ୍ତ ଅଧ୍ୟାପକ ହୋଇ ସେ କ'ଣ ଆଉ ଗୋଟିଏ ଅନୁଷ୍ଠାନରେ ଯୋଗ ଦେବେ ? କାହାର ଅଧୀନସ୍ଥ ହୋଇ ଗବେଷଣା କରିବା ତାଙ୍କ ପକ୍ଷରେ ସମ୍ଭବ ହେବ ନାହିଁ । ତେଣୁ ସେ ନିଜେ ଏକ ଘରୋଇ ଅନୁଷ୍ଠାନ ଗଢ଼ିବାର କଳ୍ପନା କଲେ ।

ଅନୁଷ୍ଠାନ ପାଇଁ ଦରକାର ଧନ, କର୍ମୀ ଓ ଜମି । କର୍ମୀର ଅଭାବ ହେବ ନାହିଁ । ଏ ଦେଶରେ ଅନେକ ଯୁବକ ଅଛନ୍ତି, ଗବେଷଣା କରିବାକୁ ସେମାନେ ଯୁବସୁଲଭ ସ୍ୱପ୍ନରେ ବ୍ୟାକୁଳ । ଗବେଷଣା ପାଇଁ କେବଳ ଉପଯୁକ୍ତ ନିର୍ଦ୍ଦେଶନା ଦରକାର । ସେ ଦକ୍ଷତା ତାଙ୍କର ଅଛି । କୋଠାବାଡି ପାଇଁ ପ୍ରଥମେ ପ୍ରାରମ୍ଭିକ ପୁଞ୍ଜି ସେ ନିଜ ଅର୍ଜନରୁ ଯୋଗାଇବେ । ଜମିପାଇଁ ମହୀଶୂର ମହାରାଜା କେବଳ ସାହାଯ୍ୟ କରି ପାରିବେ ।

ତେଣୁ ରାମନ ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟରେ ଥିଲା ବେଳେ ନୂଆ ଗବେଷଣା ଅନୁଷ୍ଠାନ ଗଢିବା ପାଇଁ ଯୋଜନା ଆରମ୍ଭ କଲେ । ମହୀଶୂର ମହାରାଜା ବାଙ୍ଗାଲୋରରେ ୧୧ ଏକରିଆ ଖଣ୍ଡିଏ ଜମି ଦାନ କଲେ । ରାମନ ୱାର୍ଲଡ ବ୍ୟାଙ୍କକୁ ଭାରତୀୟ ପ୍ରତିନିଧିଭାବେ ଯୋଗ ଦେବାକୁ ଯୁକ୍ତରାଷ୍ଟ୍ର ଆମେରିକା ଗଲେ । ସେଠାରେ ସେ ବେଲ ଟେଲିଫୋନ ଲାବୋରେଟରିକୁ ଯାଇ ଗୁଡିଏ ଖଣିଜ ସ୍ଫଟିକ ଓ ମଣି ସଂଗ୍ରହ କଲେ । କାରଣ ସେ ତାଙ୍କ ନୂଆ ଗବେଷଣାଗାରରେ ଗୋଟିଏ ଦର୍ଶନୀୟ ସଂଗ୍ରହାଳୟ ଗଢିବାକୁ ଚାହୁଁଥିଲେ ।

୧୯୪୮ରେ ରାମନଙ୍କୁ ୬୦ ବର୍ଷ ପୂରିଲା, ସେ ଇନ୍‌ଷ୍ଟିଚ୍ୟୁଟ୍‌ରୁ ଅବସର ନେଲେ । ସେତେବେଳକୁ ତାଙ୍କ ନୂଆ ଅନୁଷ୍ଠାନର କୋଠା ପ୍ରାୟ ସମ୍ପୂର୍ଣ୍ଣ ହୋଇଥିଲା । ସେ ୧୯୪୯ରେ ଡିରେକ୍ଟର ଭାବେ ନୂତନ ଅନୁଷ୍ଠାନର କାର୍ଯ୍ୟଭାର ଗ୍ରହଣ କଲେ । ତାଙ୍କୁ ସାହାଯ୍ୟ କରିବାକୁ ଅଳ୍ପ କେତେଜଣ କର୍ମଚାରୀ ମଧ୍ୟ ଯୋଗ ଦେଲେ । ଅନୁଷ୍ଠାନରେ ସେତେବେଳକୁ ଗୋଟିଏ ସୁନ୍ଦର ସଂଗ୍ରହାଳୟ, ବକ୍ତୃତା କକ୍ଷ, ପୁସ୍ତକାଳୟ, ଅଫିସଘର ଏବଂ ବୈଜ୍ଞାନିକ ଗବେଷଣା ପାଇଁ ପରୀକ୍ଷାଗାରମାନ ପ୍ରସ୍ତୁତ ହୋଇଥିଲା । ଅଳ୍ପ କେତେଜଣ ଗବେଷକଙ୍କୁ ନେଇ ରାମନ ତାଙ୍କର ଅଭିଳଷିତ ଗବେଷଣା ଖୁବ୍ ଆନନ୍ଦ ଉତ୍ସାହରେ ଆରମ୍ଭ କରିଦେଲେ ।

ଏହି ଅନୁଷ୍ଠାନର ନାମ ରାମନ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍ ବା ରାମନ ଗବେଷଣା କେନ୍ଦ୍ର ହୋଇଗଲା । ପ୍ରଥମ ବର୍ଷ ବିଦ୍ୟୁତ ଲାଇନ ଆସି ନଥାଏ । ରାମନଙ୍କର ସବୁ ପରୀକ୍ଷା ପାଇଁ ତ ବିଦ୍ୟୁତ୍ ଆଲୋକ ଦରକାର । ଏଥିପାଇଁ କ'ଣ ଗବେଷଣା ଅଟକିବ ? ରାମନ କହିଲେ – ସୂର୍ଯ୍ୟାଲୋକରେ ଗବେଷଣା ଚାଲିବ । ବାଙ୍ଗାଲୋରର ଆକାଶ ଅଧିକାଂଶ ସମୟରେ ନିର୍ମଳ, ସୂର୍ଯ୍ୟାଲୋକର ଅଭାବ ନାହିଁ । ସଂଗୃହୀତ ହୋଇଥିବା ଖଣିଜ ସ୍ଫଟିକ, ମଣି, ମୁକ୍ତା ରତ୍ନର ଆଲୋକ ପ୍ରତିଦୀପ୍ତି ଓ ବର୍ଣ୍ଣବିଭା ଉପରେ ନାନା ପ୍ରକାର ପରୀକ୍ଷା ଚାଲିଲା ।

୧୯୫୦ ରୁ ୧୯୬୦ ମଧ୍ୟରେ ମୂଲ୍ୟବାନ ରତ୍ନ, ଚନ୍ଦ୍ରକାନ୍ତ ମଣି, ଉପାଲ ଖଣ୍ଡ, ହୀରାଆଦିକୁ ନେଇ ଗବେଷଣାପତ୍ରମାନ ଛପା ହେଲା । ଯୁବସୁଲଭ ଉଦ୍ଦାମ

ଉତ୍ସାହରେ ଅବସରପ୍ରାପ୍ତ ଅଧ୍ୟାପକ ଘଣ୍ଟା ଘଣ୍ଟା ଧରି ଅନ୍ଧାରଘରେ ପର୍ଯ୍ୟବେକ୍ଷଣ କରି ଲାଗିଲେ ।

ମଣିମୁକ୍ତାର ବର୍ଣ୍ଣାଳୀ ଦେଖି ସେଇ ଅନ୍ଧାରଘରେ ଚିତ୍କାର କରି ଉଠନ୍ତି "କି ସୁନ୍ଦର, କି ସୁନ୍ଦର" । ରାମନ୍‌ଙ୍କର ସେ ବିହ୍ୱଳତା ଓ ତନ୍ମୟତା ଯେ ଦେଖିଛି ସେ କେବେ ଗବେଷଣାକାର୍ଯ୍ୟକୁ ଟଙ୍କାପଇସାରେ ତଉଲି ପାରିବ ନାହିଁ । ଗବେଷଣାରେ କେଉଁ କାମ ମୂଲ୍ୟବାନ କେଉଁଟା ବା ମୂଲ୍ୟହୀନ ତା'ର ବାଛବିଚାର କରିବ ନାହିଁ । ଯାହା ଅଜ୍ଞାତ ରହିଛି ତା'ରି ସନ୍ଧାନ ହିଁ ଗବେଷଣା । ସେହି ସନ୍ଧାନରେ ହିଁ ତୃପ୍ତି ଓ ଆନନ୍ଦ ମିଳେ । ତା'ର ମୂଲ୍ୟ କେଉ ଟଙ୍କା ପଇସାରେ ଭରଣା କରି ପାରିବ ନାହିଁ । ଛୋଟ ପିଲାଟି କିଛି ନୂଆ କଥା ଜାଣିଲେ ଯେପରି ଜାଣିଲା ବୋଲି ତାଳି ମାରି ନାଚି ଉଠେ ରାମନ ସେଇପରି ଦିବ୍ୟ ଆନନ୍ଦରେ ଅଧୀର ହୋଇ ନାଚି ଉଠୁଥିଲେ । ପାଖରେ ଥିବା ଲୋକଙ୍କୁ "ଦେଖ ଦେଖ କି ସୁନ୍ଦର" କହି ବର୍ଣ୍ଣବୀକ୍ଷଣ ଯନ୍ତ୍ର ଆଡକୁ ଟାଣି ଆଣୁଥିଲେ ।

ରାମନ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟର ଚାରିଆଡେ ସୁନ୍ଦର ଫୁଲଗଛ ଲଗାଇ ବଡ ବଡ ବଗିଚା ଉଠାଇ ଦିଆଗଲା । ନାନା ପ୍ରକାର ଗୋଲାପ ଗଛରେ ବଗିଚାସବୁ ହସି ଉଠିଲା । ରାମନ ନିଜେ ଦିନକୁ ଦୁଇଥର ବଗିଚାରେ ବୁଲି ବୁଲି ପ୍ରତି ଗୋଲାପ ଗଛର ତଦାରଖ କରନ୍ତି, ଫୁଲଗୁଡ଼ିକର ଯତ୍ନ ନିଅନ୍ତି । ଗବେଷଣା କରୁଥିବା ଛାତ୍ରମାନଙ୍କ ଗହଣରେ ବୁଲି ବୁଲି ଫୁଲର ବର୍ଣ୍ଣ ବିଷୟରେ ଆଲୋଚନା କରନ୍ତି ।

ଫୁଲ ବଗିଚାରେ ଉଡି ବୁଲୁଥିବା ପ୍ରଜାପତିମାନେ ମଧ୍ୟ ରାମନଙ୍କ ଗବେଷଣାର ବିଷୟବସ୍ତୁ ପାଲଟି ଗଲେ । ପ୍ରଜାପତି ସଂଗ୍ରହ ପାଇଁ ସେ ଏକ ଜାଲମୁଣି ଧରି ତାଙ୍କ ପଛେ ପଛେ ଗୋଡାଇଲେ । ନୋବେଲପୁରସ୍କାର ପାଇ ସାରିଲା ପରେ ବୁଢ଼ା ବୟସରେ କିଏ ପ୍ରଜାପତି ପଛରେ ଗୋଡାଏ ? ଯେ ନ ଦେଖିଛି ସେ ବିଶ୍ୱାସ କରିବ ନାହିଁ । ପ୍ରକୃତିବିଜ୍ଞାନୀ ରାମନ ଗବେଷଣାରେ ମାତି ଛୋଟ ପିଲାଙ୍କ ପରି ସୁନ୍ଦର ପ୍ରଜାପତିଟିଏ ଦେଖିଲେ ତା ପଛରେ ଦୌଡୁଥିଲେ । ରଙ୍ଗୀନ ମଣିମୁକ୍ତା, ଚକଚକିଆ ହୀରା, ଗୋଲାପଫୁଲ ଓ ପ୍ରଜାପତି ଦୀର୍ଘ ଦଶବର୍ଷ ଧରି ଗବେଷଣାରେ ତାଙ୍କୁ ତନ୍ମୟ କରି ରଖିଲା ।

୧୯୬୦ ବେଳକୁ ମଣିଷର ଚକ୍ଷୁ କିପରି ବର୍ଣ୍ଣ ଧାରଣ କରେ ତାହା ଜାଣିବାକୁ ସେ ବ୍ୟାକୁଳ ହୋଇ ଉଠିଲେ । ତାଙ୍କ ଗବେଷଣା ଅନ୍ୟ ଆଡେ ମୁହାଁଇଲା । ବର୍ଣ୍ଣ ଧାରଣା ସମ୍ପର୍କୀୟ ଶାରୀରିକ କ୍ରିୟା ଉପରେ ସେ ଗବେଷଣା ଆରମ୍ଭ କରିଦେଲେ । ବର୍ଣ୍ଣ ଦୃଷ୍ଟି ସମ୍ପର୍କୀୟ ତତ୍ତ୍ୱକୁ ବିଶ୍ଳେଷଣ କରି ସେ ନିଜ ଚକ୍ଷୁ ଉପରେ କେତେକ ଉପାଦେୟ ପରୀକ୍ଷା ଆରମ୍ଭ କରିଦେଲେ ।

ସେ ପ୍ରାୟ ୬୦୦ଟି ହୀରା ସଂଗ୍ରହ କରିଥିଲେ । ସେଗୁଡ଼ିକ ବିଭିନ୍ନ ପ୍ରକାରର ଓ ଭିନ୍ନ ଭିନ୍ନ ଭାବେ ଗଢ଼ି ଉଠିଥିଲା । ସେଗୁଡିକର ଇତିହାସ ସଂଗ୍ରହ କରି, ସେଗୁଡ଼ିକର ଗୁଣଧର୍ମ ବିଶ୍ଳେଷଣ କରି ସେମାନଙ୍କୁ ସେ ଉପଯୁକ୍ତ ଶ୍ରେଣୀରେ ସଜାଇଥିଲେ । ବାକ୍ସରେ ସଜା ହୋଇଥିବା ତାଙ୍କ ହୀରାଗୁଡ଼ିକ ଦେଖିଲେ ଯେ କେହି ମନ୍ତ୍ରମୁଗ୍ଧ ପରି ଆମ୍ବହରା ହୋଇ ଉଠିବ ।

ମହୀଶୂରର ମହାରାଜା ରାମନଙ୍କୁ "ରାଜସଭାଭୂଷଣ" ଉପାଧି ପ୍ରଦାନ କଲେ । ଏହି ଉପାଧିର ସ୍ମାରକୀ ଉପଲକ୍ଷେ ମହାରାଜା ରାମନଙ୍କୁ ୬୩ଟି ହୀରାରେ ମଣ୍ଡିତ ହୋଇଥିବା ଏକ ପଦକ ପ୍ରଦାନ କରିଥିଲେ । ରାମନ ପଦକଟିକୁ ବାକ୍ସରେ ସାଇତି ନଦେଇ ପଦକର ଗୁଣଧର୍ମ ଅନୁସନ୍ଧାନରେ ଲାଗି ପଡିଲେ । ପଦକର ହୀରାଗୁଡ଼ିକୁ ସେମାନଙ୍କର ଯୋଗ୍ୟ ଶ୍ରେଣୀରେ ବିଭକ୍ତ କରି ତାଙ୍କର ପତିଦୀପ୍ତିର ତୀବ୍ରତା ଓ ଲାକ୍ଷଣିକ ଗୁଣ ଲିପିବଦ୍ଧ କରି ରଖିଲେ । ଯେ ଥରେ ସେହି ହୀରା ସମ୍ଭାର ଓ ହୀରାସଜା ସହିତ ରାମନଙ୍କ ସାକ୍ଷାତ ଲାଭ କରିଛି ସେ କେବେହେଲେ ସେଇ ହୀରାର ଜ୍ୟୋତି ଓ ରାମନଙ୍କ ତନ୍ମୟତା ଜୀବନରେ ଭୁଲି ପାରିବ ନାହିଁ ।

ଅତି ନିଷ୍ଠାର ସହିତ ସେ ଇନ୍‌ଷ୍ଟିଚ୍ୟୁଟର ପରିଚାଳନା ସମିତିର ବୈଠକ ପରିଚାଳନା କରୁଥିଲେ । ମରିବାର ଦୁଇଦିନ ପୂର୍ବରୁ ସେ ପରିଚାଳନା ସମିତିର ବୈଠକ ଡକାଇଥିଲେ । ବିଛଣାରେ ଶୋଇରହି ସେ ବୈଠକ ପରିଚାଳନା କରିଥିଲେ । ସେ ବିଛଣାରେ ଶୋଇ ରହି ବୈଠକର ବିବରଣୀ ଲେଖିବା ପାଇଁ ଡାକି ଦେଇଥିଲେ । ସେଥିରେ ଗୋଟିଏ ବାକ୍ୟଥିଲା "ସାର୍ ସି.ଭି. ରାମନ ଆଉ କଲମ ଧରିବା ଅବସ୍ଥାରେ ନଥିବାରୁ ଯାହା ଡାକି ଦେଉଛନ୍ତି ସେଥିରେ ସେ ଦସ୍ତଖତ କରିଛନ୍ତି ବୋଲି ମନେ କରିବାକୁ ଅନୁରୋଧ ।" ତାପରେ ସେ ତାଙ୍କ ବ୍ୟକ୍ତିଗତ ସଚିବଙ୍କୁ ଡାକି ପଚାରିଲେ ଯେଉଁ ସଭ୍ୟମାନେ ଯୋଗ ଦେଇଥିଲେ ସେମାନେ ସମସ୍ତେ ଗସ୍ତଖର୍ଚ୍ଚା ପାଇଲେ ତ ।

# ପରିଚ୍ଛେଦ-୭

## ଅନ୍ତିମ ବିଦାୟ

ଦିନେ ସନ୍ଥ ବିନୋବାଜୀ କହିଥିଲେ – "ଶେଷ ମୁହୂର୍ତ୍ତ ଆସିଗଲା । ଶରୀର ଆଉ ଆମ୍ଭର ବୋଲି ମାନୁନି । ଏହା ଆମ୍ଭକୁ ଧାରଣ କରିବାକୁ ଅକ୍ଷମ । ଏ ଦେହ ତ୍ୟାଗ କରିବାକୁ ହେବ ।" ସେ ନିଗତ ଗୀତା ଅଧ୍ୟୟନ କରୁଥିଲେ । ତେଣୁ ଗୀତାର ନିର୍ଦ୍ଦେଶ ମାନିନେଲେ । 'ବାସାଂସି' ଜୀର୍ଣାନି ଯଥା ବିହାୟ; ନବାନି ଗୃହ୍ଣାତି ନରୋପରାଣି ।' ସେ ଅନ୍ନଜଳ ଗ୍ରହଣ କଲେ ନାହିଁ କି ଔଷଧ ସ୍ପର୍ଶ କଲେ ନାହିଁ । ଅନ୍ୟ କେଉଁଠି ଜନ୍ମ ନେଲେ କି ନାହିଁ କେହି ଜାଣିଲେ ନାହିଁ, କିନ୍ତୁ ସମସ୍ତେ ଜାଣିଲେ ଯେ ସେ ଜାଣି ଜାଣି ଦେହତ୍ୟାଗ କଲେ ।

ରାମନଙ୍କ ପାଇଁ ସେହି ଅନ୍ତିମ ମୁହୂର୍ତ୍ତ ଆସିଗଲା । ୧୯୬୮ ଡିସେମ୍ବରରେ ଅହମଦାବାଦଠାରେ ଇଣ୍ଡିଆନ୍ ଏକାଡେମି ଅଫ୍ ସାଇନ୍ସେସର ବାର୍ଷିକୋତ୍ସବ ପାଳିତ ହେଲା । ଖୁବ୍ ଜାକଜମକରେ ହେଲା । କାରଣ ଏହାର ସ୍ଥାପୟିତା ରାମନଙ୍କୁ ୮୦ ବର୍ଷ ପୂରିଗଲା । ସେଇ ଡିସେମ୍ବର ୨୨ରେ ସେଠାକାର ବିକ୍ରମ ସରାଭାଇ କମ୍ୟୁନିଟ୍ ସାଇନ୍ସ ସେଣ୍ଟରଠାରେ ଯୁବକ ଓ ଛାତ୍ରଙ୍କୁ "ଆକାଶ ନୀଳ କାହିଁକି" ବିଷୟରେ ସେ ଯେଉଁ ଭାଷଣ ଦେଇଥିଲେ ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ । ଏହି ଭାଷଣଟି ପରେ ଉଲ୍ଲେଖ କରାଯାଇଛି । କିନ୍ତୁ ଠିକ୍ ବର୍ଷକ ମଧ୍ୟରେ ବୟସ ତାର କାରସାଦି ଆରମ୍ଭ କରିଦେଲା ।

୧୯୬୯ ଜାନୁୟାରୀ ଓ ୧୯୭୦ ଅକ୍ଟୋବର ମଧ୍ୟରେ ତାଙ୍କ ଦେହ ବାରମ୍ବାର ଖରାପ ହେଲା । ଉତ୍ସାହୀ ଗବେଷକ ରାମନଙ୍କୁ ଜରା ଧୀରେ ଧୀରେ ଶଯ୍ୟାଶାୟୀ କରିବାକୁ ଚେଷ୍ଟା କଲା । ୧୯୭୦ ଅକ୍ଟୋବର ୨ ତାରିଖରେ ସେ ତାଙ୍କର ଶେଷ ଗାନ୍ଧିସ୍ମାରକୀ ବକ୍ତୃତା ପ୍ରଦାନ କଲେ । ବକ୍ତୃତାକକ୍ଷରେ ଶ୍ରୋତା ଭରପୂର ହୋଇଥାନ୍ତି । ଭାଷଣଶେଷରେ ସେ ଥକି ବସି ପଡିଲେ । ଶ୍ରୋତାଙ୍କ ପ୍ରଶ୍ନର ଉତ୍ତର ସେ ଚୌକିରେ ବସି କରି ଦେବେ ବୋଲି ଅନୁମତି ମାଗିଲେ । ଏଭଳି ଅନୁରୋଧ ତାଙ୍କ ଜୀବନରେ ପ୍ରଥମ । ଏହା କାଳର ଅଦୌତି । ଏଥିରୁ କିଏ ବା ମୁକ୍ତି ପାଇବ ?

ଅକ୍ଟୋବର ଶେଷ ବେଳକୁ ଦିନେ ଗବେଷଣାଗାରର ପରୀକ୍ଷା ଟେବୁଲ ଉପରେ ସେ ଟଳି ପଡିଲେ । ତାଙ୍କ ହୃତ୍‌ପିଣ୍ଡର ଭଲ୍‌ଭ ଗୁଡିକ କାର୍ଯ୍ୟ କରିବାକୁ ଅକ୍ଷମ

ହୋଇ ପଡିଲା । ସଙ୍ଗେ ସଙ୍ଗେ ତାଙ୍କୁ ଡାକ୍ତରଖାନାକୁ ନିଆଗଲା । ଡାକ୍ତରମାନେ ବ୍ୟଥିତ ହୋଇ ଘୋଷଣା କଲେ ବୋଧହୁଏ ଆଉ କେତେ ଘଣ୍ଟା ମଧ୍ୟରେ ଏ ମହାନ୍ ଦୀପ ଲିଭିଯିବ । କିନ୍ତୁ ସେ ସଂଘର୍ଷ କରି ବର୍ତ୍ତିଗଲେ । ସେ ଡାକ୍ତରଖାନାରେ ରହିବାକୁ ମଙ୍ଗିଲେ ନାହିଁ ।

ପୁଷ୍ପଉଦ୍ୟାନ ପରିବେଷ୍ଟିତ ତାଙ୍କ ଇନ୍‌ଷ୍ଟିଚ୍ୟୁଟରେ ଦେହତ୍ୟାଗ କରିବା ଥିଲା ତାଙ୍କର ଶେଷ ଇଚ୍ଛା । ତାଙ୍କୁ ଇନ୍‌ଷ୍ଟିଚ୍ୟୁଟକୁ ଅଣାଗଲା । ସେ ଯେତେବେଳେ ଜାଣିଲେ ତାଙ୍କ ପକ୍ଷେ ସାଧାରଣ କର୍ମଠ ଜୀବନଯାତ୍ରା ଆଉ ସମ୍ଭବ ନୁହେଁ ସେତେବେଳେ ସେ ଆଉ ଔଷଧ ଗ୍ରହଣ କଲେ ନାହିଁ । ଏକ ଶଯ୍ୟାଶାୟୀ ଜୀବନରେ କ'ଣ ବା ଆନନ୍ଦ ? ମୃତ୍ୟୁର ଦୁଇଦିନ ପୂର୍ବରୁ ତାଙ୍କର ଯାହା ଆଶା ଥିଲା ସେ କହିଗଲେ ଓ ଇନ୍‌ଷ୍ଟିଚ୍ୟୁଟର ପରିଚାଳନା ସମିତି ଡକାଇ ବିବରଣୀ ଲେଖାଇ ନେଲେ ।

"୧୯୪୮ରେ ରାମନ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ ମୁଁ ସ୍ଥାପନ କରିଥିଲି । କାରଣ ଅନ୍ୟ କେଉଁ ଅନୁଷ୍ଠାନ ଅପେକ୍ଷା ଏଠାରେ ମୋତେ ସୁହାଇଲା ଭଳି ମୌଳିକ ଗବେଷଣା ମୁଁ କରି ପାରିବି । ବିଜ୍ଞାନ ଅନୁଧ୍ୟାନ ମୋ ପାଇଁ ସୌନ୍ଦର୍ଯ୍ୟ ଉପଲବ୍ଧି ଓ ଆନନ୍ଦପ୍ରଦ ଅଭିଜ୍ଞତା । ଏଠାରେ ମୋ ମନଇଚ୍ଛା ଗବେଷଣା କରି ମୁଁ ସ୍ୱର୍ଗ ସୁଖ ଅନୁଭବ କରୁଥିଲି ।

ମୋ ପରେ ନିଶ୍ଚୟ ରାମନ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟର ବ୍ୟକ୍ତିକୈନ୍ଦ୍ରିକ କାରବାର ବଦଳି ଯିବ । ବିଜ୍ଞାନର ଅନ୍ୟାନ୍ୟ ଶାଖା ଖୋଲିଗଲେ ଏହା ଏକ ପ୍ରସିଦ୍ଧ ଶିକ୍ଷାକେନ୍ଦ୍ର ରୂପେ ବିକଶିତ ହେବ । ଭାରତ ତଥା ପୃଥିବୀର ବିଭିନ୍ନ ରାଜ୍ୟରୁ ବୈଜ୍ଞାନିକମାନେ ଏଠାକୁ ଆକୃଷ୍ଟ ହୋଇ ଆସିବେ । କିଏ ଏହାର ଉତ୍ତରାଧିକାରୀ ହେବ ଜଣା ନାହିଁ ।' ଯିଏ ହେଲେ ବି ସେ ଉଚ୍ଚଶିକ୍ଷାର କେନ୍ଦ୍ର ଗଠନ ପାଇଁ ଏକ ନିଖୁଣ ନିୟୁକ୍ତିୟସ ହେବା ଉଚିତ ।

ମୁଁ ସବୁବେଳେ ଅନୁଭବ କରିଛି ଅନ୍ତରରୁ ପ୍ରେରଣା ଆସିଲେ ବିଜ୍ଞାନର ଅଭିବୃଦ୍ଧି ହୁଏ । ବାହାର ଚାପରେ ଏହା ଉଧେଇ ପାରେ ନାହିଁ । ଅନ୍ୟର ନିର୍ଦ୍ଦେଶ, ଶିଳ୍ପ, ସରକାର ବା ପ୍ରତିରକ୍ଷାର ଚାପରେ ମୌଳିକ ଗବେଷଣା ହୋଇ ପାରିବ ନାହିଁ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ । କେବଳ ଏହି କାରଣରୁ ହିଁ ମୁଁ ଯେତେଦୂର ସମ୍ଭବ ସରକାରଙ୍କ ଠାରୁ ଧନ ଗ୍ରହଣ କରିନାହିଁ ।

ମୁଁ ଜଣେ ବାସ୍ତବବାଦୀ ଏବଂ ବାସ୍ତବତା ଦୃଷ୍ଟିରୁ ମୁଁ ଦେଖୁଛି ବିନା ପାଣ୍ଠିରେ ଭଲ ଅନୁଷ୍ଠାନଟିଏ ଚଳାଇବା ଓ ତା'ର ଉନ୍ନତି କରିବା ସମ୍ଭବ ନୁହେଁ । ଇନ୍‌ଷ୍ଟିଚ୍ୟୁଟ୍‌କୁ ମୋର ସମସ୍ତ ସମ୍ପତ୍ତି ମୁଁ ସମର୍ପି ଦେଇଛି । କିନ୍ତୁ ଦୁର୍ଭାଗ୍ୟର କଥା ତଥାପି କେବଳ ଏତିକିରେ ଏହି ଶିକ୍ଷା କେନ୍ଦ୍ରର ଉନ୍ନତି ଯଥେଷ୍ଟ ହେବ ନାହିଁ । ସେଥିପାଇଁ

ସରକାରୀ ସାହଯ୍ୟ ନନେବା ପାଇଁ ମୁଁ ସର୍ତ୍ତ ରଖିବି ନାହିଁ । କିନ୍ତୁ ମୋର ଏକାନ୍ତ ଇଚ୍ଛା ସେହି ସାହାଯ୍ୟ ଆଳରେ ଅନ୍ୟ କାହାର କର୍ତ୍ତୃତ୍ୱ ଏଠାରେ ଚାହିଁବ ନହେଉ ।''

ରାମନଙ୍କ ପରେ ତାଙ୍କ ସାନ ପୁଅ ପ୍ରସିଦ୍ଧ ରେଡିଓ ଜ୍ୟୋତିର୍ବିଜ୍ଞାନୀ ଭି.ରାଧାକ୍ରିଷ୍ଣନ ଇନ୍‌ଷ୍ଟିଚ୍ୟୁଟର ଡିରେକ୍ଟର ହେଲେ । ଗତ ୨୦ ବର୍ଷରେ ଏହା ଏପରି ବଢ଼ି ଗଲାଣି ଯେ ଏହାକୁ ଆଉ ଚିହ୍ନି ହେବନାହିଁ । ଏଠି ତରଳ କ୍ରିଷ୍ଟାଲ, ଜ୍ୟୋତିର୍ପଦାର୍ଥ ବିଜ୍ଞାନ ଓ ରେଡିଓ ଜ୍ୟୋତିର୍ବିଜ୍ଞାନରେ ସକ୍ରିୟ ଗବେଷଣା ଚାଲିଛି । ଭାରତ ସରକାରଙ୍କ ତରଫରୁ ଏଠାକୁ ପ୍ରଚୁର ସାହାଯ୍ୟ ମିଳୁଛି ।

ଆମ ଭାଗବତରେ ଅଛି ''ପ୍ରାଣୀର ଭଲ ମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।'' କାରଣ ବଞ୍ଚିଲା ବେଳେ ମନୁଷ୍ୟ ଭଦ୍ରତାର ମୁଖା ପିନ୍ଧି କେତେ କପଟ, ଛଳନା ଓ ରାଜନୀତିର ଆଶ୍ରୟ ନେଇଥାଏ । ପୃଥିବୀରୁ ବିଦାୟ ନେବାର ଶେଷବେଳ ଆସିଗଲେ ସବୁ ଖୋଲା ଖୋଲି ଭାବେ ସେ କହି ପକାଏ । ତା'ର ପ୍ରକୃତ ସ୍ୱଭାବ ଜଣା ପଡିଯାଏ । ଅନ୍ୟମାନେ ମଧ ମୁମୂର୍ଷୁ ପ୍ରତି ତାଙ୍କର ପ୍ରତିକ୍ରିୟା ନିଃସଙ୍କୋଚରେ ପ୍ରକାଶ କରନ୍ତି । ଫଳରେ ସବୁ ଭଲମନ୍ଦ କଥା ଜଣା ପଡିଯାଏ ।

ରାମନଙ୍କ ଶଯ୍ୟାପାର୍ଶ୍ୱରେ ସ୍ୱାମୀଙ୍କୁ ଆଉଁଶି ଦେଉ ଦେଉ ଲୋକସୁନ୍ଦରୀ କହିଲେ, ''ଯନ୍ତ୍ରଣାରୁ ମୁକ୍ତି ପାଇଁ ଈଶ୍ୱରଙ୍କ ନାମ ନିଅ ।'' ସେତେବେଳେ ବି ରାମନ ଦୃଢ଼ସ୍ୱରରେ କହିଲେ ''ମୋ ସାରାଜୀବନ ତ କେବଳ ମଣିଷର ମହାନ୍ ଆତ୍ମାରେ ବିଶ୍ୱାସ କରି ଆସିଛି । ଗାନ୍ଧି, ଯିଶୁ ଓ ବୁଦ୍ଧଙ୍କଠାରେ ମୁଁ କେବଳ ମଣିଷଆତ୍ମାର ମହତ୍ତ୍ୱ ସନ୍ଦର୍ଶନ କରିଛି । ଅନ୍ୟ କୌଣସିରେ ମୋର ବିଶ୍ୱାସ ନାହିଁ । ମରିଗଲେ ଖୁବ ସାଦାସିଧା ଭାବେ, କୌଣସି ଆଡମ୍ବର ନକରି ମୋର ଶବକୁ ଇନ୍‌ଷ୍ଟିଚ୍ୟୁଟର ହତାରେ ସତ୍କାର କରିଦେବ ।''

୧୯୭୦ ନଭେମ୍ବର ୨୧ ଶନିବାର ସକାଳର ସୂର୍ଯ୍ୟ ଉଇଁବା ପୂର୍ବରୁ, ରାମନ ପ୍ରତିଦିନ ଯେତେବେଳେ ଇନ୍‌ଷ୍ଟିଚ୍ୟୁଟର ଗବେଷଣାଗାରକୁ ଯିବାକୁ ପ୍ରସ୍ତୁତ ହୁଅନ୍ତି ଠିକ୍ ସେତିକି ବେଳକୁ, ତାଙ୍କ ଇହଲୀଳା ସମାପ୍ତ ହେଲା । ତାଙ୍କ ଶବସତ୍କାର କରାଯାଇ ମରଶରୀରର ଅବଶେଷକୁ ତାଙ୍କ ପ୍ରିୟ ଅନୁଷ୍ଠାନର ହତାରେ ସମାଧି ଦିଆଗଲା । ତାଙ୍କ ଅନ୍ତିମ ଇଚ୍ଛା ଅନୁସାରେ କୌଣସି ଧାର୍ମିକ ବିଧିବ୍ୟବସ୍ଥା ଆୟୋଜିତ ହେଲା ନାହିଁ ।

ହଜାର ହଜାର ଲୋକ, ସ୍କୁଲ ପିଲା, କଲେଜ ଛାତ୍ର, ସହକର୍ମୀ, ବନ୍ଧୁ ଓ ଅନ୍ୟମାନେ ଶେଷଦର୍ଶନ ପାଇଁ ରୁଣ୍ଡ ହୋଇଥିଲେ । ଦେଖୁ ଦେଖୁ ରାମନ ଇତିହାସର ଅନ୍ତର୍ଭୁକ୍ତ ହୋଇଗଲେ । ତାଙ୍କ ପାଇଁ କୌଣସି ସ୍ମୃତିସ୍ତମ୍ଭ ବା ସମାଧିପୀଠ ନିର୍ମାଣ କରାଗଲା ନାହିଁ । ତାଙ୍କ ସମାଧି ସ୍ଥାନରେ କେବଳ ଗଛଟିଏ ରୋପଣ କରିଦିଆଗଲା ।

ତାଙ୍କ ଶତବାର୍ଷିକୀ ପାଳନ ବେଳକୁ ପ୍ରଥମ କରି ସେହି ଗଛଟିରେ ଫୁଲ ଫୁଟିଲା ।

ରାମନ କୁଆଡେ ଗଲେଣି, ତାଙ୍କ ପରି ଜଣେ ସରଳ ମଣିଷ ଓ ସତ୍ୟାନୁସନ୍ଧାନୀ ଗବେଷକ ମିଳିବା କଷ୍ଟ । ପିଲାଙ୍କ ପରି ତାଙ୍କ ଚାଲିଚଳନ । ଯାହା ଉପରେ ଖୁସି ହୋଇ ଯାଉଥିଲେ ତାକୁ ବୁହେ ପ୍ରଶଂସା କରୁଥିଲେ । ଯାହା ଉପରେ ଚିଡି ଯାଉଥିଲେ ତା ବିଷୟରେ ଯା ଇଚ୍ଛା ତାହା କହି ଯାଉଥିଲେ ।

କିଛି ସୁନ୍ଦର ଦେଖିଲେ ସେ ଆନନ୍ଦରେ ନାଚି ଉଠୁଥିଲେ । କିଏ କ'ଣ ଭାବିବ ସେ କଥା ବିଚାରୁ ନଥିଲେ । ମାକ୍ସବର୍ଣ୍ଣ ରଦରଫୋର୍ଡଙ୍କୁ ଲେଖିଥିଲେ – ରାମନଙ୍କ ପ୍ରଧାନ ସମସ୍ୟା ହେଲା ଯେ ସେ ଜଣେ ଗାଉଁଲିଆ ସରଳ ଲୋକ । ଶେଷବେଳକୁ ତାଙ୍କ ଅନୁସନ୍ଧାନର ଫଳାଫଳ ପାଇଁ ସେ ପିଲାଙ୍କ ପରି ଖୁବ୍ ଜିଦ୍‌ଖୋର ହୋଇ ଉଠୁଥିଲେ ।

ରାମନଙ୍କ ପରି ସାହସୀ ଓ ନିର୍ଭୀକ ବୈଜ୍ଞାନିକ କ୍ୱଚିତ୍ ଦେଖାଯାଆନ୍ତି । ଯାହା ଭାବୁଥିଲେ ସିଧା ମୁହେଁ ମୁହେଁ କହି ଦେଉଥିଲେ । ଚିକଣେଇ ବା ସାଉଁଳା ସାଉଁଳି କରି କହିବା ବା କାହା ପଛରେ ତାକୁ ନିନ୍ଦା କରିବାକୁ ସେ ପସନ୍ଦ କରୁ ନଥିଲେ ।

ସେ ଜଣେ ଅତି ରୁକ୍ଷ ସମାଲୋଚକ ଥିଲେ । ନେହରୁ, ଭାଭା, ସାହା, ଭାଟନଗର କେହି ତାଙ୍କ କଟୁ ସମାଲୋଚନାରୁ ବାଦ ଯାଇ ନାହାନ୍ତି ଅଥଚ ସମସ୍ତେ ତାଙ୍କ ଅନୁଷ୍ଠାନକୁ ଆସି ତାଙ୍କ ସହିତ ସମ୍ପର୍କ ରକ୍ଷା କରିଥିଲେ । ସେ ମିଠାକଥା କହି ରାଜନୀତି ବା କୂଟନୀତି କରି ଶିଖି ନଥିଲେ । ତାଙ୍କ ମତରେ ରାଜନୀତି ଓ ବିଜ୍ଞାନ ଦୁଇଟି ପରସ୍ପରର ଭୟଙ୍କର ବିରୋଧୀ । ପ୍ରକୃତରେ କେହି ରାଜନୀତି କରି ବିଜ୍ଞାନର ଉନ୍ନତି କରି ପାରିବ ନାହିଁ । ସେଥିରେ କେବଳ ଯାହା ବ୍ୟକ୍ତିର ସ୍ୱାର୍ଥ ସାଧିତ ହୋଇଥାଏ ।

ରାମନ ଧର୍ମ ବା ଧର୍ମ ପାଳନ ବିଧି ଉପରେ ଆଦୌ ବିଶ୍ୱାସ କରୁ ନଥିଲେ । ଅଥଚ ତାଙ୍କ ଅମଳର ଲୋକେ ଅତିମାତ୍ରାରେ ଧର୍ମ ବିଶ୍ୱାସ କରୁଥିଲେ । ତାଙ୍କର ବି ଚୁଟିଟିଏ ଥିଲା, ତାହା ଧର୍ମର ସନ୍ତକ ନୁହେଁ । କେବଳ ଅଭ୍ୟାସରେ ରହି ତାହା ବଢୁଥିଲା । କିଏ କେଉଁଠି ଈଶ୍ୱରଙ୍କ କଥା ଉଠାଇଲେ ସେ ଚୁପ୍ ହୋଇଯାନ୍ତି । ତାଙ୍କ ମତରେ ମଣିଷ ବିଷୟରେ ଏତେ କଥା ଶିଖିବାକୁ ଅଛି ଯେ ଈଶ୍ୱର ବିଷୟରେ ମୁଣ୍ଡ ନଖେଳେଇବା ଉଚିତ । ତାଙ୍କ ଲେଖାରେ ବା ବକ୍ତୃତାରେ ବାରମ୍ବାର ସେ ପ୍ରକୃତି ବିଷୟ ଉଲ୍ଲେଖ କରିଥିଲେ ମଧ କେବେ ଈଶ୍ୱରଙ୍କ ନାମୋଚ୍ଚାରଣ କରି ନାହାନ୍ତି ।

ଜୀବନରେ ଥରେ କେବଳ ସେ ପରୋକ୍ଷରେ ଈଶ୍ୱରଙ୍କ କଥା ଉଠାଇଥିଲେ । ତାଙ୍କ ଅନୁଷ୍ଠାନ ଗଢ଼ିଲାବେଳେ ସେ କହିଥିଲେ – "ମୋର ଆନ୍ତରିକ ଇଚ୍ଛା,

ଆମର ଏହି ପ୍ରାଚୀନ ଦେଶର ଯୋଗ୍ୟ ଅନୁଷ୍ଠାନ ରୂପେ ଏକ ଗବେଷଣା କେନ୍ଦ୍ର ସ୍ଥାପିତ ହେଉ । ଏଥିରେ ଦେଶର ମେଧାବୀ ବ୍ୟକ୍ତିମାନେ ଗବେଷଣା କରି ବିଶ୍ୱର ରହସ୍ୟ ଉଦ୍‌ଘାଟନ କରନ୍ତୁ । ଫଳରେ ସେମାନେ ମାନବଜ୍ଞାନ ବହିର୍ଭୂତ ବିଶ୍ୱନିୟନ୍ତାଙ୍କ ସତ୍ତା ଉପଲବ୍ଧି ପାଇଁ ଆମକୁ ସାହାଯ୍ୟ କରିବେ । ସେହି ଦିବ୍ୟ କୃପା ଥିଲେ ଆମର ଦେଶପ୍ରେମୀମାନେ ଏହି ଲକ୍ଷ୍ୟ ସାଧନରେ ସାହାଯ୍ୟ କରିବାକୁ ଆଗଭର ହେବେ ।''

ବଡ଼ ବଡ଼ ବୈଜ୍ଞାନିକମାନେ ଜୀବନରେ ଶେଷ ବେଳକୁ ନୀତିଶାସ୍ତ୍ର ଆଡକୁ ଢଳନ୍ତି, ରାମନଙ୍କର ମଧ ସେଭଳି ଢଙ୍ଗ ଦେଖାଯାଇଥିଲା, କିନ୍ତୁ ତାଙ୍କର ସମସ୍ତ ନୀତିଶାସ୍ତ୍ର ଦେଶର ଅଖଣ୍ଡତା ଓ ବିଜ୍ଞାନର ଆଗ୍ରହ ଉପରେ ଆଧାରିତ ହୋଇଥିଲା । ସେ ଯଦିଓ ସୌନ୍ଦର୍ଯ୍ୟ ଉପାସକ ଓ ପ୍ରକୃତିପ୍ରେମୀ ଥିଲେ ସେ ସ୍ୱୀକାର କରି ଯାଇଛନ୍ତି ଯେ ପ୍ରକୃତିପ୍ରେମ ବା ବିଜ୍ଞାନଆଗ୍ରହ ତାଙ୍କୁ ଆକର୍ଷଣୀୟ ଚାକିରି ଛାଡି ଅଧ୍ୟାପକ ହେବାକୁ ବାଧ କରି ନ ଥିଲା । ଏହି ସ୍ୱାର୍ଥତ୍ୟାଗ ମୂଳରେ ଥିଲା ବୁଦ୍ଧଦେବଙ୍କ ସାଧନାର କାହାଣୀ ।

ଉତ୍କର୍ଷର ଶିଖରରେ ପହଞ୍ଚିବା ପାଇଁ ମନୁଷ୍ୟ କି ସାଧନା କରିପାରେ ବୁଦ୍ଧଦେବ ତାର ନିଦର୍ଶନ ରଖି ଯାଇଥିଲେ । ଐଶ୍ୱର୍ଯ୍ୟପୂର୍ଣ୍ଣ ରାଜସିଂହାସନ, ସୁନ୍ଦରୀ ଯୁବତୀନାରୀ, ନବଜାତ ଶିଶୁସନ୍ତାନ କେହି ତାଙ୍କୁ ରାଜପ୍ରାସାଦରେ ଅଟକାଇ ପାରିଲା ନାହିଁ । ଜରା, ବ୍ୟାଧି ଓ ମୃତ୍ୟୁ ଜନିତ ଆଶଙ୍କାର ଉର୍ଦ୍ଧ୍ୱକୁ ଉଠି କିପରି ଦୁଃଖର ବିନାଶ କରିବେ ତାହାରି ସନ୍ଧାନରେ ସେ ଗୃହ ତ୍ୟାଗ କଲେ । ଉତ୍କର୍ଷର ସାଧନା ପାଇଁ ମନୁଷ୍ୟର କି ସ୍ୱାର୍ଥ ତ୍ୟାଗ ।

ଏଡ୍‌ୱିନ ଆର୍ଣ୍ଣୋଲ୍‌ଡଙ୍କର ବିଖ୍ୟାତ ପୁସ୍ତକ ''ଏସିଆର ଆଲୋକ (The Light of Asia)'' ପଢ଼ି ସେ ବୁଦ୍ଧଦେବଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ସତ୍ୟର ସନ୍ଧାନ ପାଇଁ ମନୁଷ୍ୟ କେତେ ସ୍ୱାର୍ଥତ୍ୟାଗ କରି କି କଠୋର ସାଧନା କରିପାରେ ତାହାର ସୂଚନା ସେ ସେଥିରୁ ପାଇଥିଲେ । ଉତ୍ତମ ଲକ୍ଷ୍ୟ ସାଧନ ପାଇଁ ତ୍ୟାଗହିଁ ମାନବିକ ମହତ୍ତ୍ୱର ମୂଳନୀତି । ଏହି ଆଦର୍ଶକୁ ପାଥେୟ କରି ସେ ଗବେଷଣା ପଥରେ ଆଗେଇ ଚାଲିଲେ ।

## ତାଙ୍କ ସମ୍ମାନ ଓ ଉପାଧି

ରାମନଙ୍କୁ ପୃଥିବୀର ବିଭିନ୍ନ ଦେଶରୁ ବହୁ ସମ୍ମାନ ଓ ଉପାଧି ମିଳିଥିଲା । ସେଥିରୁ ଯେକୌଣସି ଗୋଟିଏ ହେଲେ ବି ତାହା ଜଣେ ବୈଜ୍ଞାନିକକୁ ଗର୍ବିତ ଓ ଉଲ୍ଲସିତ କରିବ । ଦୁଃଖ ଆସିଲା ବେଳେ ଯେମିତି ସାଙ୍ଗସାଥୀ ଧରି ଆସେ

ସମ୍ମାନ ଓ ଉପାଧି ଠିକ୍ ସେହିପରି । ଗୋଟିଏ ସମ୍ମାନ ମିଳିଲେ ତାହା ଅନ୍ୟଟି ପାଇଁ ବାଟ ଫିଟାଇ ଦିଏ । କିନ୍ତୁ ସେହି ପ୍ରଥମଟି ପାଇଁ ବ୍ୟକ୍ତିକୁ ଯଥେଷ୍ଟ କିଛି ସାଧନା କରିବାକୁ ପଡେ ।

ରାମନ ସେତେବେଳେ ମାତ୍ର ୨୦୦ ଟଙ୍କା ଖର୍ଚ୍ଚ କରି ଯେଉଁ ଉପକରଣରେ ବିଜ୍ଞାନର ଏକ ଶ୍ରେଷ୍ଠ ପରୀକ୍ଷା କରି ପାରିଥିଲେ ସେଥିରେ ପୃଥିବୀର ବୈଜ୍ଞାନିକମାନେ ବିସ୍ମିତ ହୋଇଗଲେ । ଏହା କିନ୍ତୁ ଏକ ଆକସ୍ମିକ ସାଧନା ନଥିଲା । ଏହା ପଛରେ ରାମନ ଓ ତାଙ୍କ ସହକର୍ମୀଙ୍କର ବର୍ଷବର୍ଷର ପ୍ରଚେଷ୍ଟା ନିହିତ ଥିଲା ।

୧୯୨୯ରେ ଇଂଲାଣ୍ଡର ଫ୍ୟାରାଡେ ସୋସାଇଟି ରାମନ ସିଦ୍ଧାନ୍ତଉପରେ ଏକ ସଂପାନ (ଆଲୋଚନା- ସମ୍ମିଳନୀ) ଆୟୋଜନ କଲା । ରାମନ ନିମନ୍ତ୍ରିତ ହୋଇ ସେଠାରେ ତାଙ୍କ ଆବିଷ୍କାରର ବିବରଣୀ ଅତି ଆବେଗପୂର୍ଣ୍ଣ ଭାଷାରେ ବର୍ଣ୍ଣନା କଲେ । ଲଣ୍ଡନର ରୟାଲସୋସାଇଟି ୧୯୩୦ରେ ତାଙ୍କୁ ବିଖ୍ୟାତ ହ୍ୟୁଗ୍‌ସ ପଦକ ପ୍ରଦାନ କଲା । ରୟାଲସୋସାଇଟିର ସଭାପତି ଲର୍ଡ ରଦରଫୋର୍ଡ ମାନପତ୍ରରେ ପଢ଼ିଲେ—

"ସାର୍ ଭେଙ୍କଟ ରାମନ ଆଲୋକରେ ବିଶେଷତଃ ଆଲୋକବିଚ୍ଛୁରଣରେ ଜଣେ ଅଗ୍ରଗଣ୍ୟ ବିଶାରଦ । ଏ ସଂକ୍ରାନ୍ତରେ ୩ ବର୍ଷ ତଳେ ସେ ଆବିଷ୍କାର କଲେ ବିଚ୍ଛୁରଣ ହେତୁ ଆଲୋକର ମୂଳ ବର୍ଣ୍ଣ ବଦଳିଯାଏ । ଯଦିଓ ଏହା ଆଗରୁ ଘୋଷିତ ହୋଇଥିଲା ଏହାକୁ କେହି ପରୀକ୍ଷା କରି ଦେଖାଇ ପାରି ନଥିଲେ । ଗତ ଦଶନ୍ଧିରେ ବ୍ୟାବହାରିକ ପଦାର୍ଥବିଜ୍ଞାନରେ ଯେଉଁ ୩/୪ଟି ଶ୍ରେଷ୍ଠ ଆବିଷ୍କାର ହୋଇଛି ରାମନସିଦ୍ଧାନ୍ତ ସେଗୁଡ଼ିକ ମଧ୍ୟରୁ ଗୋଟିଏ । କଠିନ ପଦାର୍ଥର ତତ୍ତ୍ୱ ଅନୁଧ୍ୟାନ ପାଇଁ ଏହା ଏକ ପ୍ରଭାବଶାଳୀ ସାଧନ ହୋଇଛି ଓ ହେବ । ଜ୍ଞାନର ବିଭିନ୍ନ ବିଭାଗରେ ତାଙ୍କର ଅନେକ ଅବଦାନ ସହିତ ସେ କଲିକତା ବିଶ୍ୱବିଦ୍ୟାଳୟରେ ଭୌତିକବିଜ୍ଞାନ ଗବେଷଣା ପାଇଁ ଏକ ସକ୍ରିୟ ଅନୁସନ୍ଧାନ ସ୍କୁଲ ପ୍ରତିଷ୍ଠା କରିଛନ୍ତି ।"

ରାମନସିଦ୍ଧାନ୍ତ ଆବିଷ୍କାର ପାଇଁ ସେ ୧୯୩୦ର ନୋବେଲପୁରସ୍କାର ପାଇଲେ । ଏଥିପାଇଁ ୧୯୩୦ ଡିସେମ୍ବର ୨୦ରେ ସେ ଷ୍ଟକହଲମ ଉଦ୍ଦେଶ୍ୟରେ ସସ୍ତ୍ରୀକ ଯାତ୍ରା କରିଥିଲେ । ଏ ପୁରସ୍କାର ଘୋଷଣା ହେବା ପୂର୍ବରୁ ସେ ଜୁଲାଇ ମାସରୁ ଆଗତୁରା ଦୁଇଟି ଟିକେଟ କାଟିଥିଲେ ।

ରବୀନ୍ଦ୍ରନାଥ ଠାକୁର ସାହିତ୍ୟ ପାଇଁ ୧୯୧୩ରେ ନୋବେଲ ପୁରସ୍କାର ପାଇଥିଲେ । ଏବେ ବିଜ୍ଞାନରେ ରାମନ ଦେଶକୁ ଉତ୍କର୍ଷର ଶିଖରକୁ ଉଠାଇଥିବାରୁ ସେ ଜଣେ ଜାତୀୟବୀର ରୂପେ ଦେଶରେ ସର୍ବତ୍ର ଆଦୃତ ଓ ସମ୍ମାନିତ ହେଲେ । ଦେଶବିଦେଶର ବିଶ୍ୱବିଦ୍ୟାଳୟରୁ ତାଙ୍କୁ ଅନେକ ସମ୍ମାନସୂଚକ ଉପାଧି ମିଳିଲା । ୧୯୨୮ରେ ଇଟାଲୀ ତାଙ୍କୁ ମାଟିଉସି ପଦକ ପ୍ରଦାନ କଲେ । ୧୯୨୯ରେ ବ୍ରିଟିଶ୍ ସରକାର ତାଙ୍କୁ

ନାଇଟପଦ ଦେଇଥିଲେ । ଏହାର ଚିହ୍ନ ସ୍ୱରୂପ ସେ ସାର୍ ଉପାଧି ତାଙ୍କ ନାମ ପୂର୍ବରୁ ଯୋଖୁଥିଲେ । ଦେଶ ସ୍ୱାଧୀନ ହେଲା ପରେ ମଧ୍ୟ ଏହାକୁ ବର୍ଜନ କରି ନଥିଲେ । ୧୯୨୪ରୁ ସେ ଲଣ୍ଡନ ରୟାଲସୋସାଇଟିର ଫେଲୋ ନିର୍ବାଚିତ ହୋଇଥିଲେ ।

୧୯୩୫ରେ ମହୀଶୂର ମହାରାଜା ତାଙ୍କୁ 'ରାଜସଭାଭୂଷଣ' ଉପାଧିରେ ମଣ୍ଡିତ କରାଇଥିଲେ । ୧୯୪୨ରେ ଫିଲାଡେଲଫିଆର ଫ୍ରାଙ୍କଲିନ୍ ଇନ୍‌ଷ୍ଟିଚ୍ୟୁଟରୁ ଫ୍ରାଙ୍କଲିନପଦକ ଲାଭ କରିଥିଲେ । ଭାରତ ସରକାର ୧୯୫୪ରେ ତାଙ୍କୁ ଦେଶର ସର୍ବୋତ୍ତମ ଉପାଧି 'ଭାରତରତ୍ନ' ପ୍ରଦାନ କରିଥିଲେ । ସେଇ ବର୍ଷ ରୁଷିଆରୁ ଲେନିନ ପୁରସ୍କାର ମଧ୍ୟ ପାଇଥିଲେ । ତାଙ୍କ ସମ୍ମାନ ମଧ୍ୟରୁ ଏହି କେତେକ ବିଶିଷ୍ଟ ସମ୍ମାନର ଉଲ୍ଲେଖ କରାଗଲା ।

# ପରିଚ୍ଛେଦ-୮

## ସେ ଥିଲେ ବିଜ୍ଞାନଗୁରୁ

ଖାଲି ପାଠ ପଢ଼ାଇଲେ କେହି ଗୁରୁ ହୁଏ ନାହିଁ । ଶ୍ରେଣୀରେ ରୁଟିନ ଜଗି ଯେ ପଢ଼ାନ୍ତି ସେ ଶିକ୍ଷକ ବା ଅଧ୍ୟାପକ । ପାଠ ପଢ଼ାଇ ଦେଲେ ତାଙ୍କ କାମ ସରିଲା । ପରୀକ୍ଷା କରିବା ଆଜିକାଲି ପାଠପଢ଼ାର ଅଙ୍ଗ ହୋଇ ଗଲାଣି । ତେଣୁ ଶିକ୍ଷକ ଖୁବ୍ ହେଲେ ଛାତ୍ରକୁ ପରୀକ୍ଷା କରିଥାନ୍ତି । କିନ୍ତୁ ଏହି ଶିକ୍ଷକ ବା ଅଧ୍ୟାପକମାନେ ଗୁରୁ ହୋଇ ପାରନ୍ତି ନାହିଁ । ଯେପର୍ଯ୍ୟନ୍ତ ସ୍କୁଲ କଲେଜର ରେଜିଷ୍ଟରରେ ଛାତ୍ରର ନାଁ ଥାଏ ସେପର୍ଯ୍ୟନ୍ତ ସେମାନଙ୍କର ଶିକ୍ଷକ ଛାତ୍ର ସମ୍ପର୍କ ଥାଏ । ହତା ବାହାରକୁ ଗଲେ ଏହା ଛିନ୍ନ ହୋଇଯାଏ ।

କିନ୍ତୁ ଗୁରୁ-ଶିଷ୍ୟ ସମ୍ପର୍କ ଜୀବନରେ ଅବିଚ୍ଛେଦ୍ୟ । ଶିଷ୍ୟ ଗୁରୁଠାରୁ ଯାହା ଶିଖିଥାଏ ତାହା ସାରା ଜୀବନ ତା'ର ଜୀବନ ଓ ଜୀବିକାରେ ପଥ ପ୍ରଦର୍ଶକ ହୁଏ । ରାମନ ଥିଲେ ସେହିପରି ଜଣେ ଗୁରୁ । ତାଙ୍କ ଛାତ୍ରମାନେ କେବଳ ଛାତ୍ର ହୋଇ ରହୁନଥିଲେ ଶିଷ୍ୟ ପାଲଟି ଯାଉଥିଲେ । ରାମନ ବି କେବଳ ଶ୍ରେଣୀଗୃହରେ ପଢ଼ାଇ ଦେଇ ନିଶ୍ଚିନ୍ତ ହେଉ ନ ଥିଲେ । ତାଙ୍କ ପାଇଁ "ଗୃହ ବାହାର ନାହିଁ ଭିନ୍ନ, କି ଅବା ବନ ଶମଶାନ" । ପ୍ରକୃତି ଥିଲା ତାଙ୍କ ପାଠଶାଳା । ଛାତ୍ରକୁ ଯେଉଁଠି ଦେଖିଲେ ପାଠଚର୍ଚ୍ଚା ଆରମ୍ଭ ହୋଇ ଯାଉଥିଲା ।

କଲିକତାରେ ପାଲିତ ପ୍ରଫେସର ହୋଇଥିଲେ କିନ୍ତୁ ତାଙ୍କର ପାଠପଢ଼ା ଦାୟିତ୍ୱ ନ ଥିଲା । କିନ୍ତୁ ସେ ତାଙ୍କ ତରଫରୁ ଏମ୍.ଏସ୍‌ସି. ଶ୍ରେଣୀରେ ପଢ଼ାଉଥିଲେ । ତାଙ୍କ ମତରେ ଜଣେ ଗବେଷକ ଶିକ୍ଷକ ହେଲେ ତାର ପାଠପଢ଼ାରେ ନୂତନତ୍ୱ ରହେ । କେବଳ ପରୀକ୍ଷାକୁ ଆଖି ଆଗରେ ରଖି ସେ ପଢ଼ାଏ ନାହିଁ । ପଢ଼ା ମାଧ୍ୟମରେ ସେ ପିଲାଙ୍କୁ ଅନୁସନ୍ଧାନର ସ୍ୱାଦ ଚଖାଇ ଦିଏ ।

ଥରେ ପାଠରେ ଆଗ୍ରହ ଜନ୍ମିଲେ, ଜାଣିବା ପାଇଁ ବ୍ୟାକୁଳତା ଜନ୍ମିଲେ, ଛାତ୍ର କ'ଣ ନାହିଁ କ'ଣ ଜାଣି ବସେ । ବହିକୁ ନ ସାରିବା ପର୍ଯ୍ୟନ୍ତ ତା ଆଖିକୁ ନିଦ ଆସେ ନାହିଁ, ସେ ଖାଇବାପିଇବା ଭୁଲିଯାଏ । ଦରମାକୁ ଆଖି ଆଗରେ

ରଖ୍ ଯେ ପଢ଼ାଏ ସେ ଦୀକ୍ଷା ଦେଇ ପାରିବ କୁଆଡୁ ? ଯେ ନିଜେ ଜାଣିବା ପାଇଁ ବ୍ୟାକୁଳ ନୁହେଁ ସେ ଅନ୍ୟରଠାରେ ଜାଣିବାର ବ୍ୟାକୁଳତା ସୃଷ୍ଟି କରିବ କିପରି ?



ଶିକ୍ଷକ- ରାମନ (ଶ୍ରେଣୀ ଗୃହରେ)

ରାମନ କହନ୍ତି – ପାଠ ପଢ଼ାଇଲେ ପାଠ ଭୁଲି ନହୋଇ ବାରମ୍ବାର ମନେପଡ଼େ । ୧୯୨୦-୨୧ରେ ସେ ଏମ୍.ଏସ୍‌ସି.ରେ ବିଦ୍ୟୁତ୍ ଓ ଚୁମ୍ବକ ବିଜ୍ଞାନ ଏବଂ ୧୯୨୧-୨୨ରେ ଆଲୋକ ବିଜ୍ଞାନ ପଢ଼ାଉଥିଲେ । ବିଦ୍ୟୁତ୍ ଓ ଚୁମ୍ବକ ବିଜ୍ଞାନ ପଢ଼ାଇଲା ବେଳେ ୩୦ଟି ବକ୍ତୃତା ଦେଇ ସେ ଏହି ବିଜ୍ଞାନର ପୂର୍ବ ସୂରି ବେଞ୍ଜାମିନ ଫ୍ରାଙ୍କଲିନ୍, ଓଏରଷ୍ଟେଡ, ଆରାଗୋ, ଗାଉସ, ଫ୍ୟାରାଡେ, ମାକ୍ସୱେଲ, ହର୍ଜ, ଲର୍ଡ କେଲଭିନ୍ ଓ ଅନ୍ୟମାନଙ୍କ ସହିତ ଛାତ୍ରଙ୍କୁ ପରିଚିତ କରାଇ ଦେଉଥିଲେ ।

ସତେ ଯେପରି ସେହି ବୈଜ୍ଞାନିକମାନେ ଛାତ୍ରଙ୍କ ଆଗରେ ଠିଆ ହୋଇ ତାଙ୍କ ଗବେଷଣାର କାହାଣୀ ଓ ତଥ୍ୟମାନ ଭାବ ଗଦ୍‌ଗଦ୍ ସ୍ୱରରେ କହି ଯାଉଛନ୍ତି । ଏସବୁ ବିଷୟ ପଢ଼ି ରାମନଙ୍କର ଯେଉଁ ଅନୁଭୂତି ହୋଇଥିଲା ସେହି ସ୍ୱାଦ ସେ ତାଙ୍କ ଛାତ୍ରଙ୍କୁ ପଡାଇଲାବେଳେ ଚଖାଇ ଦେଉଥିଲେ । ଏଥିପାଇଁ ତାଙ୍କ ଭାଷା, ପ୍ରକାଶନ ଶୈଳୀ, ଅନୁରକ୍ତି ଓ ଅଧ୍ୟୟନ ନିଷ୍ଠା ତାଙ୍କୁ ଏତେ ଉର୍ଦ୍ଧ୍ୱକୁ ଉଠାଇ ପାରୁଥିଲା ।

ପଢ଼ାଇଲାବେଳେ ସେ ଘଣ୍ଟାବଜା ଶୁଣି ପାରୁ ନ ଥିଲେ । ଏକାଦି କ୍ରମେ ଦୁଇ ଘଣ୍ଟା, ତିନିଘଣ୍ଟା, କ୍ଲାନ୍ତ ନହୋଇ ସେ ପଢ଼ାଉଥିଲେ । କେତେ ଜଟିଳ ବିଷୟକୁ ସେ ସରଳ କରି ଦେଉଥିଲେ । ନୂଆ ନୂଆ ଉପାୟରେ ସେ ଗଣିତ ସୂତ୍ରମାନ ବ୍ୟାଖ୍ୟା କରୁଥିଲେ, କ'ଣ ପାଇଁ ଏସବୁ କରୁଛନ୍ତି, ଭୌତିକ ବିଜ୍ଞାନର ଏହା ସହିତ ସମ୍ପର୍କ କ'ଣ ପ୍ରତିପଦରେ ବ୍ୟାଖ୍ୟା କରି ସେ ବୁଝାଇ ଦିଅନ୍ତି । ଆବଶ୍ୟକ ସ୍ଥଳେ ପରୀକ୍ଷା କରି ଦେଖାଇ ଦିଅନ୍ତି ।

ଗଣିତଜ୍ଞାନ ସର୍ବସ୍ୱ ନୁହେଁ, ବିଜ୍ଞାନ ଜାଣିବାର ଏହା ଏକ ବଳିଷ୍ଠ ଅବଲମ୍ବନ । ତାହା ସେ ତାଙ୍କ ବକ୍ତୃତାରେ ପ୍ରତିପାଦନ କରନ୍ତି । ଫଳରେ ଛାତ୍ରମାନେ ମାକ୍ସୱେଲ, ଜେଜେ ଟମ୍‌ସନ, ଫ୍ୟାରାଡେ ଓ କେଲ୍‌ଭିନ ପ୍ରଭୃତି ବଡ ବଡ ବୈଜ୍ଞାନିକଙ୍କ ଲେଖା ଅଧିକ ପଢ଼ିବାକୁ ଆଗ୍ରହୀ ହୋଇ ପଡନ୍ତି । ସେହିପରି ଆଲୋକବିଜ୍ଞାନ ପଢ଼ାଇଲା ବେଳେ ନିଜର ଗବେଷଣାକଥା କହିବା ସଙ୍ଗେ ସଙ୍ଗେ ହାଇଜିନ୍‌ସ, ଫ୍ରେନେଲ, ମାସକାର୍ଟ, ସ୍ଟୁକ୍ସର, ଉଡ୍, ର୍ୟାଲେ ଓ ଅନ୍ୟମାନଙ୍କ ଚମତ୍କାର ବୈଜ୍ଞାନିକପରୀକ୍ଷା କଥା କହିଥାନ୍ତି । ଫଳରେ ଛାତ୍ର ପଢୁଥିବା ପାଠ ଓ ଗବେଷଣା ମଧ୍ୟରେ ଦୂରତା ବା ପାର୍ଥକ୍ୟ ଅନୁଭବ କରେନାହିଁ । ଛାତ୍ର ଅବସ୍ଥାରେ ସେ ଗବେଷଣା କଥା ଚିନ୍ତା କରେ ।

ଏବେ ଶ୍ରେଣୀ ପାଠ ଓ ଗବେଷଣା ମଧ୍ୟରେ ଦୂରତ୍ୱ ବହୁତ ଲମ୍ବି ଯାଇଛି ଓ ଦିନକୁଦିନ ଅଧିକ ଲମ୍ବି ଯାଉଛି । ଉତ୍ତୀର୍ଣ୍ଣ ଛାତ୍ର ଶ୍ରେଣୀ ପାଠର ଜଟିଳତା ଭିତରେ ଏଭଳି ଆତଙ୍କିତ ହେଉଛି ଯେ ଗବେଷଣା କରିବା ଦୂରେ ଥାଉ ଗବେଷଣାର

ସ୍ୱପ୍ନ ବି ଦିନେ ଦେଖୁନାହିଁ । ତାପଗତି ବିଜ୍ଞାନ, ଗ୍ୟାସର ଚଳନତତ୍ତ୍ୱ, ଆଧୁନିକ ପଦାର୍ଥବିଜ୍ଞାନ ଯାହା ବି ପଢ଼ାଇ ବସୁଥିଲେ ତାକୁ ସରଳ କରିପକାଇ ସେ ଛାତ୍ରଙ୍କ ମନରେ ସବୁଦିନ ପାଇଁ ସେଗୁଡ଼ିକୁ ଛାପି ଦେଉଥିଲେ ।

ରାମନ ବିଜ୍ଞାନବହି ପୃଷ୍ଠାଗୁଡ଼ିକୁ ଧାଡ଼ି ଧାଡ଼ି କରି ପଢ଼ୁଥିଲେ । ତାଙ୍କ ପଢ଼ା ଅତି ବିଶ୍ଳେଷଣାତ୍ମକ ଥିଲା । ଦରକାର ପଡ଼ିଲେ ସେ ଧାଡ଼ିଗୁଡ଼ିକୁ ରେଖାଙ୍କିତ କରି ପାର୍ଶ୍ୱରେ ତାଙ୍କ ମନ୍ତବ୍ୟ ଲେଖି ରଖୁଥିଲେ । ଏହା ସତ କଥା ଯେ ସେ ଅଧିକ ସମୟ ଗବେଷଣାରେ ବିତାଉଥିଲେ । ଶ୍ରେଣୀରେ ଖୁବ୍ କମ୍ ପଢ଼ାଉଥିଲେ । ପଢ଼ାଇଲାବେଳେ ସେ ପାଠପଢ଼ାରେ ମଜ୍ଜି ଯାଉଥିଲେ । ଗବେଷଣା କରୁଛନ୍ତି ବୋଲି ସେ ଯାହା ତାହା ପଢ଼ାଇ ଦେଇ କାମ ଚଳେଇ ଦେଉ ନଥିଲେ ।

୧୯୨୦ ବେଳକୁ କଲିକତାରେ ତାଙ୍କ ସହିତ ଅନେକ ମେଧାବୀ ଛାତ୍ର ଗବେଷଣାରେ ମାତିଥିଲେ । ସେମାନେ ତାଙ୍କର ଏକାନ୍ତ ଅନୁଗତ ଥିଲେ । ରାମନଙ୍କ ଛାତ୍ର ହୋଇଥିବାରୁ ସେମାନେ ନିଜକୁ ଧନ୍ୟ ମନେ କରୁଥିଲେ । ରାମନ ମଧ୍ୟ ବକ୍ତୃତା ପ୍ରସଙ୍ଗରେ ଏହି ଛାତ୍ରମାନଙ୍କର କୃତିତ୍ୱ ବରାବର ଉଲ୍ଲେଖ କରୁଥିଲେ । ସେମାନଙ୍କ ଗୁରୁ ଶିଷ୍ୟ ସମ୍ପର୍କ ସବୁବେଳେ ମଧୁର, ସରସ ଓ ଜୀବନ୍ତ ଥିଲା । କଲିକତା, ବାଙ୍ଗାଲୋର କିମ୍ବା ତାଙ୍କ ନିଜ ଇନ୍‌ଷ୍ଟିଚ୍ୟୁଟରେ ଯେଉଁ ଶିଷ୍ୟମାନେ ତାଙ୍କୁ ଜୁଟୁଥିଲେ ସେମାନେ ଗୁରୁଙ୍କ ପ୍ରଥମ ପରୀକ୍ଷାର କଠୋରତା ସହି ରହିଗଲେ ପରେ ଅନୁଗତ ପାଲଟି ଯାଉଥିଲେ । ଦିନକୁ ଦିନ ସେମାନଙ୍କ ସମ୍ପର୍କ ଘନିଷ୍ଠତର ଓ ନିବିଡ଼ତର ହୋଇ ଉଠୁଥିଲା ।

ତାହାହେଲେ ଏହି ପ୍ରଥମ ପରୀକ୍ଷା କ'ଣ ? ଏହା ବଡ଼ କଠିନ । ପ୍ରକୃତରେ ଯେ ବିଦ୍ୟା ଜାଣିଥାଏ ସେ ଉତ୍ତୀର୍ଣ୍ଣ ହୁଏ । ପିଲାଟି କେତେ ଜାଣିଛି, ସମାଧାନ କରିବା ପାଇଁ କେତେ ମୁଣ୍ଡ ଖେଳାଇ ପାରୁଛି ତାହା ସେ ପରୀକ୍ଷା କରନ୍ତି । ଯେଉଁ ନଗେନ୍ଦ୍ରନାଥ, ରାମନଙ୍କ ସହ ଗବେଷଣା କରି ବିଖ୍ୟାତ ରାମନ-ନାଥ ତତ୍ତ୍ୱ ବାହାର କରିଥିଲେ ସେ ବି ଏହି ପ୍ରଥମ ପରୀକ୍ଷା ଦେଇଥିଲେ ।

ନଗେନ୍ଦ୍ରନାଥ ଗଣିତ ଅନର୍ସ ପାସ କରି ବାଙ୍ଗାଲୋର ଇନ୍‌ଷ୍ଟିଚ୍ୟୁଟରେ ଇଲେକ୍‌ଟ୍ରିକାଲ ଟେକ୍ନୋଲଜି ଡିପାର୍ଟମେଣ୍ଟରେ ନାଁଲେଖା ପାଇଁ ଅନୁମତି ପାଇଥାନ୍ତି । ବୃତ୍ତି ମିଳିବ ବୋଲି ମଧ୍ୟ ଅନୁମତି ପତ୍ରରେ ଲେଖା ହୋଇଥାଏ । ତାଙ୍କର ପଦାର୍ଥବିଜ୍ଞାନ ପ୍ରତି ବହୁତ ଆଗ୍ରହ ଥାଏ । ରାମନ ଥିଲେ ତାଙ୍କ ଆଦର୍ଶ । ତାଙ୍କୁ ଥରେ ଦେଖା କରିବାକୁ ତାଙ୍କର ଇଚ୍ଛା ହେଲା ।

ତାଙ୍କର ମନ ହେଲା ଥରେ ରାମନଙ୍କୁ ଭେଟି ବୁଝିବେ ତାଙ୍କୁ ପଦାର୍ଥବିଜ୍ଞାନ ବିଭାଗରେ ନାଁ ଲେଖାଇବାକୁ ସୁଯୋଗ ମିଳିବ କି ନାହିଁ । ରାମନଙ୍କୁ ସେ ଭେଟିଲେ ।

ସେଇଦିନ ଉପରବେଳା ତାଙ୍କୁ ଦେଖା କରିବାକୁ ରାମନ କହିଲେ । ତାଙ୍କୁ ରାମନ କିଛି ପଚାରିବେ ବୋଲି ନଗେନ୍ଦ୍ରନାଥ ଭାବିଲେ । ଓଳିକ ମଧ୍ୟରେ ସେ କ'ଣ ବା ପଢ଼ିବେ ? ତଥାପି ଆସି ଦେଖାକଲେ ।

ସତକୁ ସତ ରାମନ ତାଙ୍କୁ ଗୁଡାଏ ପ୍ରଶ୍ନ ପଚାରି ଲାଗିଲେ । ଲାଗ୍ରାଞ୍ଜି ସମୀକରଣ କ'ଣ ବୋଲି ଆରମ୍ଭ କଲେ । ହାମିଲଟନ କାନନିକାଲ ସମୀକରଣ, ହାମିଲଟନ ଜାକୋବି ତତ୍ତ୍ୱ ଓ ଏ ସମ୍ବନ୍ଧୀୟ ଯାବତୀୟ ତତ୍ତ୍ୱ ପଚାରିଲେ । ତାପରେ ପଦାର୍ଥବିଜ୍ଞାନରୁ ପଚାରି ବସିଲେ । ନିଉଟନଙ୍କ ବର୍ଣ୍ଣବଳୟ, ଇନ୍ଦ୍ରଧନୁର ବର୍ଣ୍ଣ, ରାସ୍ତାରେ ପଡିଥିବା ପେଟ୍ରୋଲ ବୁନ୍ଦାର ବର୍ଣ୍ଣ, ଧ୍ୱନିର ବିସ୍ପନ୍ଦନ, ମାକ୍ସୱେଲଙ୍କ ବିଦ୍ୟୁତଚୁମ୍ବକ ତତ୍ତ୍ୱ, ବୋର୍‌ଙ୍କ କ୍ୱାଣ୍ଟମତତ୍ତ୍ୱ, ସ୍ରଡିଞ୍ଜରଙ୍କ ସମୀକରଣ, ମେଟ୍ରିକ୍‌ସ ମେକାନିକ୍‌ସ, ବଳର ବ୍ୟୁତ୍‌କ୍ରମ ବର୍ଗଅନୁପାତରେ ଘୂରୁଥିବା ଗ୍ରହର କକ୍ଷ ଓ ଶେଷରେ ରାମନସିଦ୍ଧାନ୍ତ ଉପରେ ଗୁଡିଏ ପ୍ରଶ୍ନ ପଚାରିଲେ ।

ସାକ୍ଷାତ୍‌କାର ସରିଲା । ପରଦିନ ଆସି ନାଁ ଲେଖାଇବାକୁ ସେ ନଗେନ୍ଦ୍ରନାଥଙ୍କୁ କହିଲେ । ସେତେବେଳେ ଯାଇ ନଗେନ୍ଦ୍ରନାଥ କହିଲେ ଯେ ସେ ଇଲେକ୍‌ଟ୍ରିକାଲ ଟେକ୍ନୋଲୋଜି ଡିପାର୍ଟମେଣ୍ଟରେ ନାଁ ଲେଖାଇଛନ୍ତି ଓ ସେଠାରେ ମଧ୍ୟ ବୃତ୍ତି ପାଇବେ । ରାମନ ନିରାଶ ହୋଇଗଲା ପରି ଜଣା ପଡିଲେ । କହିଲେ ତାଙ୍କ ଡିପାର୍ଟମେଣ୍ଟରେ ବୃତ୍ତି ନାହିଁ । ସେ ଯଦି ଚାହିଁବେ ସେଠୁ ନାଁ କଟେଇ ପଦାର୍ଥବିଜ୍ଞାନରେ ନାଁ ଲେଖାଇ ପାରନ୍ତି । ପଚାରିଲେ "କ'ଣ କହୁଛ ?" ନଗେନ୍ଦ୍ର କହିଲେ, "ହଁ ଆସିବି ।"

ନଗେନ୍ଦ୍ରନାଥ ବୃତ୍ତି ଛାଡି ଆସି ନାଁ ଲେଖାଇଲେ; ଛାତ୍ରାବାସରେ ରହିବାକୁ ସ୍ଥାନ ପାଇଲେ ନାହିଁ । ପ୍ରତିଦିନ ୨୦ କିଲୋମିଟର ଯାଆସ କରି ପଦାର୍ଥ ବିଜ୍ଞାନ ପଢ଼ିଲେ । ଏହାଥିଲା ରାମନଙ୍କ ପରି ଗୁରୁଙ୍କର ଆକର୍ଷଣ । ପରେ ପାରସ୍ୱନିକ ବିଜ୍ଞାନରେ ରାମନଙ୍କ ସହିତ ମିଶି ସେ ଯେଉଁ ରାମନ-ନାଥ ତତ୍ତ୍ୱ ବାହାର କଲେ ତାହା ପୃଥିବୀବିଖ୍ୟାତ ହୋଇଗଲା । ବାଙ୍ଗାଲୋରରେ ଥିବା ବେଳେ ରାମନଙ୍କର ଯେତେ ଗବେଷଣା ହୋଇଛି ଏହା ସେଗୁଡିକ ମଧ୍ୟରେ ଶୀର୍ଷ ସ୍ଥାନ ଦଖଲ କରିଥିଲା ।

ଗୁରୁଙ୍କର ଶିଷ୍ୟମାନେ ଗୁରୁଙ୍କ ପରେ ଜଣେ ଜଣେ ଖ୍ୟାତନାମା ଗୁରୁ ହୋଇଯାନ୍ତି । ପ୍ରକୃତରେ ଗୁରୁ ତାଙ୍କ ଶିଷ୍ୟମାନଙ୍କ ଭିତରେ ହିଁ ବଞ୍ଚନ୍ତି । ରାମନଙ୍କ ଛାତ୍ରମାନେ ପ୍ରତ୍ୟେକ ନିଜ ନିଜ କର୍ମକ୍ଷେତ୍ରରେ ପାରଦର୍ଶିତା ପ୍ରଦର୍ଶନ କରୁଥିଲେ । ତେଣୁ ରାମନ କେବଳ ତାଙ୍କୁ ପଦାର୍ଥ ବିଜ୍ଞାନ ନ ପଢ଼ାଇ ତାଙ୍କ ଭିତରେ ଏକ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ ଜାଗ୍ରତ କରାଇ ଦେଉଥିଲେ । ସେଥିପାଇଁ ରାମନ ଥିଲେ ଯଥାର୍ଥରେ ଜଣେ ବୈଜ୍ଞାନିକଋଷି ବା ବିଜ୍ଞାନ ଗୁରୁ । ମେଧାବୀ ଛାତ୍ରଙ୍କର ଆକର୍ଷଣ କେନ୍ଦ୍ର ।

## କାହିଁକି ସେ ଭାରତ ଗୌରବ

ରାମନଙ୍କ ପୂର୍ବରୁ ରାମାନୁଜନ୍ ଓ ସାର ଜଗଦୀଶ ଚନ୍ଦ୍ର ବୋଷ ଗଣିତ ଓ ବିଜ୍ଞାନରେ ବେଶ୍ ସୁନାମ କରିଥିଲେ । ରାମାନୁଜନ୍ ବେଶୀ ଦିନ ବଞ୍ଚିଲେ ନାହିଁ, ବହୁତ ପାଠ ମଧ୍ୟ ପଢ଼ି ନଥିଲେ । ତଥାପି ସଂଖ୍ୟାତତ୍ତ୍ୱ ଉପରେ ତାଙ୍କ ମୌଳିକତା ଏବେ ବି ଗଣିତରେ ପ୍ରହେଳିକା ସୃଷ୍ଟି କରିଛି । ତାଙ୍କ ସୃଜନୀଶକ୍ତି ଓ ଚିନ୍ତାଧାରା ଥିଲା ପ୍ରକୃତରେ ରହସ୍ୟମୟ । ତାଙ୍କ ପ୍ରଭାବରେ ଅନ୍ୟମାନେ ଅନୁପ୍ରାଣିତ ହୋଇଥିଲେ । କିନ୍ତୁ ଅନ୍ୟମାନଙ୍କୁ ଉତ୍ସାହିତ କରିବାକୁ ତାଙ୍କର କ୍ଷମତା ଓ ପ୍ରଚେଷ୍ଟା ନଥିଲା । ସେହିପରି ଜଗଦୀଶଚନ୍ଦ୍ର ବୋଷ ଜଣେ ଉଚ୍ଚକୋଟୀର ପଦାର୍ଥବିଜ୍ଞାନୀ ହେଲେ ମଧ୍ୟ ଆଶାନୁରୂପ ଗବେଷଣା ବାତାବରଣ ସୃଷ୍ଟି କରି ପାରି ନ ଥିଲେ । ଏମାନେ ବ୍ୟକ୍ତିଗତ ବା ଏକକ ଚେଷ୍ଟାରେ ଗବେଷଣାର ଶୀର୍ଷକୁ ଉଠିଥିଲେ ।



ଗବେଷଣାଗାରରେ ରାମନ

ରାମନ ଥିଲେ କିନ୍ତୁ ଭିନ୍ନ ଧରଣର । ସେ ଥିଲେ ଗବେଷଣା କେନ୍ଦ୍ର ବା ଅନୁଷ୍ଠାନର ନିର୍ମାତା । ଛାତ୍ରାବସ୍ଥାରୁ ତାଙ୍କର ଗବେଷଣା ଆରମ୍ଭ ହୋଇଥିଲା । ଭାରତ ସଂସ୍କୃତିର ପ୍ରତୀକ ବୁଦ୍ଧଦେବଙ୍କ ତ୍ୟାଗରେ ସେ ଅନୁପ୍ରାଣିତ ହୋଇ ପଦପଦବୀର

ଲାଳସା ତ୍ୟାଗ କରିଥିଲେ । ଏକ ଅଳ୍ପ ବେତନଭୋଗୀ ଅଧ୍ୟାପକ ପଦକୁ ଆଦରି ନେଇ ସେ ଗବେଷଣାରେ ନିଜକୁ ହଜାଇ ଦେଉଥିଲେ । ତା ପୂର୍ବରୁ ସରକାରୀ ଚାକିରିରେ ଥାଇ ସେ ଉତ୍କୃଷ୍ଟ ଗବେଷଣାର ନିଦର୍ଶନ ଦେଖାଇଥିଲେ ।

କଲିକତାର ଇଣ୍ଡିୟାନ ଆସୋସିଏସନ ଫର କଲଟିଭେସନ ଅଫ ସାଇନ୍ସକୁ ଜୀବନଦାନ କରି ପ୍ରତିଷ୍ଠାତାଙ୍କ ସ୍ୱପ୍ନକୁ ସାର୍ଥକ କରିଥିଲେ । ତାହା ଏକ ସକ୍ରିୟ ଅନୁଷ୍ଠାନରେ ପରିଣତ ହୋଇଥିଲା । କଲିକତା ବିଶ୍ୱବିଦ୍ୟାଳୟର ପାଲିତ ପ୍ରଫେସର ହୋଇ ପଦାର୍ଥବିଜ୍ଞାନ ବିଭାଗକୁ ପୃଥିବୀ ବିଖ୍ୟାତ କରାଇଥିଲେ । ବାଙ୍ଗାଲୋର ଯାଇ ସେଠା ଇଣ୍ଡିୟାନ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସାଇନ୍‌ସେସର ପଦାର୍ଥବିଜ୍ଞାନ ବିଭାଗ ପ୍ରତିଷ୍ଠା କରିଥିଲେ । ଗବେଷଣାରେ ଏହା ମଧ୍ୟ ପୃଥିବୀ ବିଖ୍ୟାତ ହେଲା । ମାକ୍ସବର୍ଣ୍ଣଙ୍କ ପରି ବୈଜ୍ଞାନିକମାନେ ଏଠାକୁ ଗବେଷଣା କରିବାକୁ ଆସିଥିଲେ । ଅବସର ପରେ ସେ ରାମନରିସର୍ଚ୍ଚ ଅନୁଷ୍ଠାନ ପ୍ରତିଷ୍ଠା କଲେ । ଏହି ଅନୁଷ୍ଠାନଗୁଡ଼ିକରେ ଯେଉଁମାନେ ତାଲିମ ପାଇ ବାହାରିଲେ ସେମାନେ କେବଳ ଭାରତରେ ନୁହେଁ ପୃଥିବୀରେ ଖ୍ୟାତି ଅର୍ଜନ କଲେ ।

ଗବେଷଣାର ପ୍ରସାର ପାଇଁ ଦେଶରେ ବିଜ୍ଞାନ ଜର୍ଣ୍ଣାଲ (ଗବେଷଣା ପତ୍ରିକା) ରହିବା ଦରକାର । ପ୍ରଥମେ ସେ କଲିକତାରେ ''ପ୍ରୋସିଡିଂସ ଅଫ୍ ଇଣ୍ଡିୟାନ ଆସୋସିଏସନ ଫର କଲଟିଭେସନ ଅଫ୍ ସାଇନ୍ସ'' ଛପାଇଲେ । ପରେ ତାହା ''ଇଣ୍ଡିୟାନ ଜର୍ଣ୍ଣାଲ ଅଫ୍ ଫିଜିକ୍ସ'' ରୂପେ ନାମିତ ହେଲା । ତାଙ୍କର ଗବେଷଣା ପତ୍ର ଏଥିରେ ଛପା ହେଉଥିବାରୁ ତାହା ପୃଥିବୀ ବିଖ୍ୟାତ ପତ୍ରିକା ହୋଇଗଲା ।

ବାଙ୍ଗାଲୋରରେ ସେ ''ଇଣ୍ଡିୟାନ ଏକାଡେମି ଅଫ୍ ସାଇନ୍‌ସେସ''ର ପ୍ରତିଷ୍ଠା କଲେ । ଭାରତର ଶ୍ରେଷ୍ଠ ବୈଜ୍ଞାନିକମାନେ ଏହି ସଂଘର ସଭ୍ୟ ହେଲେ । ଯୁବ ପ୍ରତିଭାର ଆକର୍ଷଣ ପାଇଁ ଦେଶର ବିଭିନ୍ନ ସହରରେ ଏହି ସଂଘର ବାର୍ଷିକୋତ୍ସବ ଅନୁଷ୍ଠିତ ହେଉଥିଲା । ଏହି ସଂଘର ମୁଖପତ୍ର ରୂପେ ସେ ଦୁଇଟି ଗବେଷଣା ପତ୍ରିକା ନିୟମିତ ପ୍ରକାଶ କରୁଥିଲେ । ପ୍ରସିଦ୍ଧ ଲଣ୍ଡନ ପତ୍ରିକା 'ନେଚର' ଅନୁରୂପ ଅନ୍ୟ ଏକ ପତ୍ରିକା ''କରେଣ୍ଟ ସାଇନ୍ସ'' ୧୯୩୨ରୁ ସେ ପ୍ରକାଶ କରୁଥିଲେ ।

ଏହି ଅନୁଷ୍ଠାନ ଗୁଡ଼ିକ ତରଫରୁ ସେ ଜନପ୍ରିୟ ବକ୍ତୃତାମାଳାର ଆୟୋଜନ କରୁଥିଲେ । ଦେଶରେ ବୈଜ୍ଞାନିକ ମନୋଭାବ ଓ ବିଜ୍ଞାନଚେତନା ପ୍ରସାର ପାଇଁ ସେ ସାଧାରଣ ଭାଷାରେ ଅତି ସରଳ କରି ଜଟିଳ ବିଜ୍ଞାନ ତତ୍ତ୍ୱମାନ ବୁଝାଉଥିଲେ । ତାଙ୍କ ମତରେ ବକ୍ତୃତାରେ ଯାହା କୁହାଯାଏ ଯଦି ଶ୍ରୋତାମାନେ ତାହା ନ ବୁଝିଲେ ତାହାହେଲେ ସେ ବକ୍ତୃତା ମୂଲ୍ୟହୀନ । ଏଥିରେ ବକ୍ତା ଓ ଶ୍ରୋତା ଉଭୟଙ୍କର ସମୟ ନଷ୍ଟ । କେବଳ ସେତିକି ନୁହେଁ ବିଷୟବସ୍ତୁଟି ପ୍ରତି ଶ୍ରୋତାମାନେ ଅନେକ

ଦିନ ଯାଏ ବୀତସ୍ପୃହ ହୋଇ ପଡନ୍ତି । ଯେତେ କଠିନ ବିଷୟ ହେଲେବି ପ୍ରକୃତରେ ଯେ ତାକୁ ବୁଝିଥାଏ ସହଜରେ ସେ ଅନ୍ୟକୁ ବୁଝାଇ ପାରିବ । ତାଙ୍କର ଏହି ମନୋଭାବ ପାଇଁ ସେ ତାଙ୍କ ବକ୍ତୃତାକୁ ଖୁବ୍ ସହଜ, ସରଳ ଓ ସରସ କରି ପାରନ୍ତି । ୮୦ ବର୍ଷ ବୟସରେ ସେ ଯୁବକମାନଙ୍କୁ କିପରି ଆବେଗମୟୀ ଭାଷଣ ଦେଇଥିଲେ ଅନ୍ୟତ୍ର ତାଙ୍କର ଗୋଟିଏ ଭାଷଣର ଅବିକଳ ଅନୁବାଦ କରାଯାଇଛି ।

ପଦାର୍ଥବିଜ୍ଞାନରେ ବିଭିନ୍ନ ଶାଖା ଉପରେ ସେ ଅତି ମୌଳିକ ଗବେଷଣା କରି ଯାଇଛନ୍ତି । ସନ୍ଧାନ କରୁ କରୁ ଯେତେ ଦୂର ଯାଇ ହେବ ଯିବା ପାଇଁ ସେ ଚେଷ୍ଟା କରିଛନ୍ତି । ଫୁଲର ରଙ୍ଗ ହେଉ ବା ହୀରାର ଅଣୁ ସଜ୍ଜା ହେଉ କିମ୍ବା ଏକ ବିକ୍ଷୁବ୍ଧ ମାଧ୍ୟମରେ ଆଲୋକ ବିଚ୍ଛୁରଣ ହେଉ ସବୁ ଗବେଷଣା ଏକା । ସବୁ ସମସ୍ୟାକୁ ଅତି ନିଷ୍ଠାର ସହିତ ସେ ଅନୁଧ୍ୟାନ କରିଥିଲେ ।

ଉପରଠାଉରିଆ ଉତ୍ତରରେ ସେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ଝାଳବୁହା ଶ୍ରମ ନହେଲେ ଗବେଷଣା ସମ୍ଭବ ନୁହେଁ । ତାଙ୍କ ଛାତ୍ର ଓ ଶିଷ୍ୟମାନେ ଏହିଭଳି ଏକ ନିଷ୍ଠାପର ମନୋଭାବ ନେଇ ନିଜକୁ ଗଢୁଥିଲେ । ତେଣୁ ଯଥାର୍ଥରେ ରାମନଙ୍କୁ ବିଜ୍ଞାନ ଋଷି ବୋଲି କୁହାଯାଉଥିଲା । ଯଦିଓ ଗତାନୁଗତିକ ଧର୍ମରେ ସେ ବିଶ୍ୱାସ କରୁ ନଥିଲେ ତାଙ୍କ ଗବେଷଣା ପୂରାପୂରି ଭାରତୀୟ ଆଦର୍ଶରେ ପରିଚାଳିତ ହେଉଥିଲା ।

ତାଙ୍କ ଜୀବନ ଦର୍ଶନ, ଦୈନନ୍ଦିନ ଚଳଣି ଯେକୌଣସି ବିଜ୍ଞାନ ଛାତ୍ରର ଅନୁକରଣୀୟ । କଥାକଥାରେ ହସ, ଥଟ୍ଟା ପରିହାସ, ସବୁ କଥାରେ ବୈଜ୍ଞାନିକ ବିଶ୍ଳେଷଣ । ଯେ ତାଙ୍କ ସହିତ ଅଳ୍ପ ସମୟ ପାଇଁ କଥାବାର୍ତ୍ତା ହେବ, ବା କିଛି ଦୂର ବୁଲିଯିବ ତାଙ୍କ ଆଲୋଚନାରେ ଅଭିଭୂତ ହୋଇ ସେ ବିଜ୍ଞାନକୁ ଆଦରି ବସିବ । ତାଙ୍କ ମତରେ ବୈଜ୍ଞାନିକ କ୍ରିୟାକଳାପ ମନୁଷ୍ୟ ଅନ୍ତରର ଅନିବାର୍ଯ୍ୟ ଆବଶ୍ୟକତା । ଏ ଜୀବନ ବିଜ୍ଞାନ ଉପରେ ଆଧାରିତ । ଏ ପ୍ରସଙ୍ଗରେ ଏକ ଘଟଣାର ଉଲ୍ଲେଖ କରାଯାଇ ପାରେ ।

ଥରେ ରାମନ ଜଣେ ସ୍ୱିଜରଲାଣ୍ଡର ବୈଜ୍ଞାନିକ ଡକ୍ଟର ରାହ୍ମଙ୍କୁ ମହାତ୍ମା ଗାନ୍ଧିଙ୍କ ପାଖକୁ ନେଇଗଲେ । ଅତି ଶୀତଳ ତାପମାତ୍ରାରେ ବଞ୍ଚିପାରୁଥିବା ଜୀବଙ୍କ ଉପରେ ସେ ବୈଜ୍ଞାନିକ ଜଣକ ଗବେଷଣା କରୁଥିଲେ । ଡଃ ରାହ୍ମ ଗାନ୍ଧିଜିଙ୍କୁ ଅଭିବାଦନ ଜଣାଇ ପଚାରିଲେ "ମହାତ୍ମାଜୀ, ପୃଥିବୀରେ ବାଦାନୁବାଦ ଓ ସଂଘର୍ଷର କ'ଣ ଅନ୍ତ ନାହିଁ ? ଆମେ ଯଦି ସମସ୍ତେ ଏକାଠି ହୋଇ ନପାରିବା ତାହାହେଲେ ଏହି ନାସ୍ତିକତା ବା ନିରୀଶ୍ୱରବାଦ ବଢ଼ିଚାଲିବ । ଏହା ବିରୋଧରେ ସଂଗ୍ରାମ କରିବା କିପରି ?"

ସାର ସି.ଭି. ରାମନ କହିଲେ "ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବି ।

ଯଦି ଈଶ୍ୱର ଥାନ୍ତି ଆମେ ତାଙ୍କୁ ବିଶ୍ୱରେ ଖୋଜିବା ନାହିଁ । ତାଙ୍କୁ ଖୋଜିବାର ଆବଶ୍ୟକତା ନାହିଁ । ସବୁଆଡେ ମୋତେ ଲୋକେ ନାସ୍ତିକ କହନ୍ତି, କିନ୍ତୁ ମୁଁ ପ୍ରକୃତରେ ସେପରି ନୁହେଁ । ଜ୍ୟୋତିର୍ବିଜ୍ଞାନ ଓ ପଦାର୍ଥବିଜ୍ଞାନରେ ଅଧିକ ଗବେଷଣା ହେବା ଫଳରେ ଈଶ୍ୱର ଆମ ନିକଟରେ ଅଧିକ ପ୍ରକାଶିତ ହେଉଛନ୍ତି । ମହାତ୍ମାଜୀ, ଧର୍ମସବୁ ଆମକୁ ଏକାଠି କରି ପାରିବନି । କେବଳ ବିଜ୍ଞାନ ଆମକୁ ପୂର୍ଣ୍ଣ ସୌହାର୍ଦ୍ଦ୍ୟର ସୁବିଧା ଦେବ । ବିଜ୍ଞାନର ସବୁ ଲୋକ ନିଜ ନିଜର ଭାଇ ।''

''ଏହାର ବିପରୀତ କ'ଣ ? ଯେଉଁମାନେ ବିଜ୍ଞାନର ଲୋକ ନୁହନ୍ତି ସେମାନେ କ'ଣ ଭାଇ ଭାଇ ନୁହନ୍ତି ?'' ଗାନ୍ଧିଜୀ ପଚାରିଲେ ।




କେଉଁ ବର୍ଷ କେତେ ଗବେଷଣା ପତ୍ର ଛପା ହେଲା

ଲବ୍ଧପ୍ରତିଷ୍ଠ ପଦାର୍ଥବିଦ୍ ଗାନ୍ଧିଜୀଙ୍କ ପରିହାସର ମର୍ମ ବୁଝି କହିଲେ ''କିନ୍ତୁ ସମସ୍ତେ ଚାହିଁଲେ ବିଜ୍ଞାନର ଲୋକ ହୋଇପାରିବେ ।''।

ରାମନଙ୍କ ପରି କେଉଁ ଜଣେ ଲୋକ ଭାରତରେ ଏତେ କଥା କରି ପାରିଛି ? ସେ ବିଜ୍ଞାନ ପାଇଁ ଜୀବନର ସବୁକିଛି ଉତ୍ସର୍ଗ କରିଛନ୍ତି । ଅଧ୍ୟାପକ ଓ ଗବେଷକ ହୋଇ ଏକ ବିରାଟ ବୈଜ୍ଞାନିକ ଗୋଷ୍ଠୀ ଗଠନ କରିଛନ୍ତି । ଗବେଷଣାର ସୁବିଧା

ପାଇଁ କେନ୍ଦ୍ର, ଅନୁଷ୍ଠାନ, ଏକାଡେମି, ପତ୍ରପତ୍ରିକା ଯାହା ଦରକାର ତାହା ଖଞ୍ଜି ଦେଇ ଯାଇଛନ୍ତି । ନିଜର ବାଗ୍ମିତା ଓ ଉତ୍ସାହ ବଳରେ ଦେଶରେ ସର୍ବତ୍ର ଜନ ମାନସରେ ବିଜ୍ଞାନର ଆଦର ଓ ଗୌରବର ସ୍ଥାୟୀ ଛାପ ମାରି ଦେଇ ଯାଇଛନ୍ତି । କଳା ଓ ସଂସ୍କୃତିର ଦେଶରେ ବିଜ୍ଞାନର ପ୍ରସାର ଓ ପ୍ରତିଷ୍ଠା ପାଇଁ ଜଣେ ବ୍ୟକ୍ତି କ'ଣ ନ କରିଛନ୍ତି ? ବିଜ୍ଞାନ ଓ କଳାର ସମନ୍ୱୟ ପ୍ରତିଷ୍ଠା କରି ସେ ଯେପରି ଦେଶର ସର୍ବତ୍ର ଆଦରଣୀୟ ହୋଇଥିଲେ ଅନ୍ୟ କାହା ପକ୍ଷରେ ତାହା ଏପର୍ଯ୍ୟନ୍ତ ସମ୍ଭବ ହୋଇନି । ଯଥାର୍ଥରେ ସେ ଥିଲେ ଭାରତର ଗୌରବ ଭାରତରତ୍ନ ସାର୍ ସି.ଭି. ରାମନ । ଦେଶ ପ୍ରତିବର୍ଷ ଫେବୃୟାରୀ ୨୮କୁ ଜାତୀୟ ବିଜ୍ଞାନ ଦିବସ ରୂପେ ଘୋଷଣା କରିଛି । ୧୯୨୮ ମସିହାର ଏହି ତାରିଖରେ ପୃଥିବୀବାସୀଙ୍କୁ ରାମନସିଦ୍ଧାନ୍ତ ଆବିଷ୍କାର କଥା ଜଣାଇ ଦିଆ ଯାଇଥିଲା ।

# ପରିଚ୍ଛେଦ-୯

## ତାଙ୍କ ଭାଷଣର ଗୋଟିଏ ଉଦାହରଣ : 'ଆକାଶ ନୀଳ କାହିଁକି'

ମୋତେ ଯେତେବେଳେ କୌଣସି ଗୋଟିଏ ବିଜ୍ଞାନ ବିଷୟ ବାଛି କିଛି କହିବାକୁ କୁହାଗଲା ମୁଁ ସଙ୍ଗେ ସଙ୍ଗେ ''ଆକାଶ ନୀଳ ଦିଶେ କାହିଁକି'' ବିଷୟଟି ଠିକ୍ କଲି । ଯୋଗକୁ ଆଜି ପ୍ରକୃତି ମଧ୍ୟ ଅନୁକୂଳ; ଉପରକୁ ଅନେଇ ଦେଖୁଛି ଆକାଶ ନୀଳ; ଅବଶ୍ୟ ସବୁଆଡ଼େ ନୁହେଁ, ଏଠି ସେଠି ଅନେକ ବାଦଲ ଘୂରି ବୁଲୁଛି । ଏ ବିଷୟଟି ବାଛିବାର ପ୍ରଧାନ କାରଣ ହେଲା – ଏହାକୁ ବୁଝିବାକୁ ହେଲେ କୌଣସି ପରୀକ୍ଷାଗାରକୁ ଯିବା ଦରକାର ନାହିଁ । ଉପରକୁ ଚାହଁ, ଆକାଶକୁ ଅନାଅ । ମୋ ମତରେ ଏହା ହିଁ ବୈଜ୍ଞାନିକ ଚେତନାର ଉତ୍କୃଷ୍ଟ ଉଦାହରଣ । ଏ ପୃଥିବୀରେ ବିଜ୍ଞାନ ଶିଖିବାକୁ ହେଲେ ଆଖି ଖୋଲ, କାନ ଡେର, ଚାରିଆଡ଼କୁ ଚାହଁ । ଅନ୍ତତଃ ମୋ ପାଇଁ ପ୍ରକୃତି ପ୍ରେମ ହିଁ ମୋତେ ବିଜ୍ଞାନର ଉତ୍ସାହ ଦେଇଛି । ବାସ୍ତବିକ ଏହି ପୃଥିବୀରେ ଆମେ ଯୁଆଡ଼େ ଚାହୁଁ, ସେଆଡ଼େ ପ୍ରାକୃତିକ ପ୍ରହେଳିକାମାନ ଦେଖୁ । ପ୍ରକୃତରେ ମୁଁ ଯାହା ଦେଖୁଛି, ସବୁ ମୋ ପାଇଁ ରହସ୍ୟମୟ । ଆମେ ସେସବୁକୁ ଗୋଟିଏ ଗୋଟିଏ ସାଧାରଣ ଘଟଣା ବୋଲି ଧରିନେଉ । କିନ୍ତୁ ବୈଜ୍ଞାନିକତା କ'ଣ ସେଇଆ ? ମୁଁ ଭାବୁଛି – ସେହି ସାଧାରଣ ଘଟଣା ପଛରେ କି ଗୁପ୍ତ ରହସ୍ୟ ରହିଛି, ତା' ପାଇଁ ଗହୀରେଇ ଓ ଦୂରେଇକରି ଦେଖିବାକୁ ହେବ । ଆମର ଏ ବାସସ୍ଥଳୀ ପୃଥିବୀ ଯେ ବିସ୍ମୟ-ପରିପୂର୍ଣ୍ଣ, ତାହା ମର୍ମେ ମର୍ମେ ଅନୁଭବ କରିବାକୁ ହେବ । ଆମେ ଯାହାସବୁ ଦେଖୁଛେ, ସେସବୁକୁ କାବା ହୋଇ ଅନେଇ ରହିଲେ ହେବନାହିଁ । ସେସବୁ ଆମ ମନୁଷ୍ୟତ୍ୱ ପ୍ରତି ଗୋଟିଏ ଗୋଟିଏ ଆହ୍ୱାନ; ତାକୁ ବୁଝିବା ପାଇଁ ଚେଷ୍ଟା କରିବାକୁ ହେବ । ସେସବୁକୁ ଯେଉଁ ପ୍ରହେଳିକା ବେଢ଼ି ରହିଛି, ତାକୁ ଆଡ଼େଇବାକୁ ପଡ଼ିବ ।

ବିଜ୍ଞାନ ଅନବରତ ଏହି ଆହ୍ୱାନର ମୁକାବିଲା କରିବାକୁ ମଣିଷକୁ ହାତ ଠାରିଛି । ଆଜିର ମୁଖ୍ୟ ସମସ୍ୟା କଥା ଉଠାଇ ଡକ୍ଟର ସରାଭାଇ ତାଙ୍କ ଭାଷଣରେ କହିଲେ – ଏହି ଆହ୍ୱାନର ମୁକାବିଲା ପାଇଁ ଆମ ଦେଶର ଯୁବ-ସମାଜକୁ ଜାଗ୍ରତ କରାଇବାକୁ

ହେବ । ତାହାହେଲେ ପୁଣିଥରେ ଏ ମହାନ୍ ଭାରତ ଉଦ୍ୟମ, ଅନୁସନ୍ଧାନ ଓ ଜ୍ଞାନର ପ୍ରଧାନ ପୀଠ ହୋଇ ମୁଣ୍ଡ ଟେକିବ । ମୋର ଏକାନ୍ତ ଇଚ୍ଛା, ଏଥିରେ ତମେ ସଫଳ ହୁଅ । ଏବେ ମୋର ପୂର୍ବ ଆଲୋଚନା ''ଆକାଶ ନୀଳ କାହିଁକି''କୁ ମୁଁ ଫେରିଆସୁଛି ।

ମୁଁ ଏ ପ୍ରଶ୍ନ ଆଲୋଚନା କରିବାର କାରଣ ହେଲା – ଏହା ଏକ ସହଜ ବିଷୟ । କେବଳ ଉପରକୁ ଚାହିଁଲେ ମୁଁ ଦେଖିବି ଯେ, ଆକାଶ ନୀଳ । କିନ୍ତୁ ଏ କାହିଁକି ନୀଳ ? ସବୁଠାରୁ କୌତୁକିଆ କଥା ହେଲା – ସାଧାରଣଭାବେ ଏହାର ଉତ୍ତର ଦେବା ଅତି ସହଜ । ଜଣେ ଉଦ୍ଭିଦ-ବିଜ୍ଞାନୀଙ୍କୁ ପଚାର ପତ୍ର କାହିଁକି ସବୁଜ ? ସେ ଗୁଣୁ ଗୁଣୁ ହୋଇ କହିବ – ''କ୍ଲୋରୋଫିଲ୍ ସବୁଜ କଣିକା ।'' ସେଇଠି ଶେଷ । ଆମେ ସବୁ ବିଜ୍ଞାନ-ପ୍ରଶ୍ନକୁ ଏହିପରି ଠିକେ ଠିକେ ଗୋଟିଏ କି ଦୁଇଟି ଶବ୍ଦରେ ଉତ୍ତର ଦେଉ । ସେଭଳି ଉତ୍ତର ଦେଇ ତମେ ପରୀକ୍ଷାରେ ପାସ୍ କରିପାର, କିନ୍ତୁ ତାହା ପ୍ରକୃତ ଉତ୍ତର ନୁହଁ । ମୁଁ ଆଗରୁ କହିଛି – ପ୍ରକୃତି ପାଇଁ ବିଜ୍ଞାନର ଆହ୍ୱାନ ହେଲା – ଚିନ୍ତା କରିବା । ଆବିଷ୍କାର ନୁହେଁ, ଏକମାତ୍ର ଲକ୍ଷ୍ୟ ଚିନ୍ତନ । ଅନବରତ ଚିନ୍ତା କରି ରହସ୍ୟ ଭେଦ କରିବା – ''ଏହା କାହିଁକି ନୀଳ ?'' ଏହା ବେଶ୍ କୌତୂହଳିଆ ପ୍ରଶ୍ନ, କାରଣ ଏଥିରେ ଦୁଇଟି କଥା ଅଛି । ସେଠି ଆକାଶ ଅଛି, ଏଠି ମୁଁ ଅଛି । ମୁଁ ଏହାକୁ ନୀଳ ଦେଖୁଛି । ଏହି ପ୍ରଶ୍ନରେ ମନୁଷ୍ୟର ମସ୍ତିଷ୍କ ଓ ମନ ଜଡ଼ିତ ହୋଇଛି । ଏବେ ଏଇ ପ୍ରଶ୍ନଟି ମୁଁ ଯୁବକମାନଙ୍କ ଆଗରେ ରଖୁଛି । ଏ ସମ୍ବନ୍ଧରେ କୌଣସି ବହି ପଢ଼ନା, ଏ ବିଷୟରେ ତମ ଶିକ୍ଷକଙ୍କୁ କିଛି ପଚାରନା, ଆସ, ଚୁପ୍‌କରି ବସି ଆମେ ଏହାର ଉତ୍ତର ପାଇଁ ଚିନ୍ତା କରିବା 'ଆକାଶ କାହିଁକି ନୀଳ ?' ମନେକର ବିଜ୍ଞାନରେ ଏହା ଏକ ନୂଆ ପ୍ରଶ୍ନ । ଆଗରୁ କେହି ଯା ବିଷୟରେ ଟିକିଏ ବି ମୁଣ୍ଡ ଖେଳାଇନି । ତମେ ଟିକିଏ ସ୍ଥିର ହୋଇ ଚିନ୍ତାକର, ନିଜକୁ ଏହି ପ୍ରଶ୍ନଟି ବାରମ୍ବାର ପଚାର; ଏହା ତମକୁ ଅଥୟ କରି ପକାଇବ । ଦେଖ, ତମେ ଏହାର ଉତ୍ତର ଖୋଜି ପାଉଛ କି ନାହିଁ । ଏବେ ମୁଁ ତମକୁ ଅନ୍ୟ ପ୍ରକାରେ ଏହା କହୁଛି । କୌଣସି ପ୍ରଶ୍ନର ଉତ୍ତର ଖୋଜିବାର ପ୍ରକୃଷ୍ଟ ଉପାୟ ହେଲା – ଅନ୍ୟ ଗୋଟିଏ ପ୍ରଶ୍ନ ପଚାରିବା ।

ରାତିରେ ଆମେ ତାରାଗୁଡ଼ିକୁ ଦେଖୁ । କେବଳ ଏକ ନିର୍ମଳ ରାତିରେ ତାରାମାନେ ଆକାଶରେ ଜୁଳୁଜୁଳୁ ହେଉଥାନ୍ତି । ଦିନରେ କାହିଁକି ସେମାନେ ଦିଶନ୍ତି ନାହିଁ ? ଏ ପ୍ରଶ୍ନଟି ତମେ ନିଜକୁ ପଚାର । ଏହାର କାରଣଟା ତମେ ସହଜରେ ଅନୁମାନ କରିପାରିବ । ଆମର ଏ ପୃଥିବୀ ଜଣେ ଲଜ୍ଜାଶୀଳା ତରୁଣୀ ପରି ଏକ ଆବରଣରେ

ନିଜ ଶରୀରକୁ ଲୁଚେଇ ରଖିଛି । ସେଇ ଆବରଣଟି ହେଲା ଆକାଶ । ତାକୁ ପୃଥିବୀ ନିଜ ଚାରିପଟେ ବେଢ଼େଇ ହୋଇଛି । ଦିନବେଳେ ଆମେ ତାରା ଦେଖିପାରୁନା, କାରଣ ତାହାର ଏହି ଶାଢ଼ିଟି ତାରାଙ୍କୁ ଲୁଚେଇଦିଏ । ତାହାହେଲେ ଏ ଆବରଣ କ'ଣ ? ତାହା ପୃଥିବୀର ବାୟୁମଣ୍ଡଳ । ରାତିରେ ଏହି ଆବରଣ ଏତେ ସ୍ୱଚ୍ଛ ଯେ, ଏହା ଭିତର ଦେଇ ଆମେ ଛାୟାପଥର ଅତି ଅସ୍ପଷ୍ଟ ତାରାକୁ ଦେଖିପାରୁ, ଅଥଚ ଦିନବେଳେ ସେସବୁ ଘୋଡ଼େଇ ହୋଇ ପଡ଼ନ୍ତି । ତାହାହେଲେ ନିଶ୍ଚୟ ଏହି ବାୟୁମଣ୍ଡଳ ହିଁ ସେହି ଆବରଣ । ଆକାଶ ଆମକୁ ନୀଳ ଦିଶେ, କାରଣ ସେତେବେଳେ ଏହି ଆବରଣଠାରୁ ଅଧିକ ବହଳିଆ ମେଘ ଆକାଶରେ ନଥାଏ । ଏବେ ନୀଳ ଆକାଶରେ ଭାସୁଥିବା ସେହି ମେଘଖଣ୍ଡମାନଙ୍କୁ ଚାହଁ । ଏହା ନିଶ୍ଚିତ କଥା ଯେ, ଆକାଶକୁ ନେଳିଆ ଦେଖିବାକୁ ହେଲେ ସେଠି ମେଘ କି ଧୂଳିକଣା ନଥିବ । ଆକାଶ ଯେତେ ଅଧିକ ସଫା ଥିବ, ସେତେ ଅଧିକା ନେଳିଆ ଦିଶିବ । ତାହାହେଲେ ଆକାଶ ସବୁବେଳେ ନୀଳ ଦିଶେ ନାହିଁ । ଏହା ବେଳେ ବେଳେ ନୀଳ ଓ ବେଳେ ବେଳେ ଆଦୌ ନୀଳ ନୁହେଁ । ତାହାହେଲେ ଆକାଶକୁ କେବଳ ଅନେଇ ଅନେଇ ଆମେ ବାୟୁମଣ୍ଡଳର ଅବସ୍ଥା କ'ଣ ବୁଝିପାରିବା ?

ଏଠି ମୁଁ ଆଉ ଗୋଟିଏ କଥା କହି ରଖୁଛି । ଏହା ନିଶ୍ଚିତ କଥା ଯେ, ଆକାଶ ଓ ବାୟୁମଣ୍ଡଳ ସୂର୍ଯ୍ୟକିରଣରେ ଆଲୋକିତ । ବାୟୁମଣ୍ଡଳର ଏକ ଦୀର୍ଘ ସ୍ତମ୍ଭ ଦେଇ ସୂର୍ଯ୍ୟକିରଣ ଅତିକ୍ରମ କରିଆସୁଛି । ରାତିରେ ଏହି ସ୍ତମ୍ଭଟି ସ୍ୱଚ୍ଛ ଏବଂ ଅଦୃଶ୍ୟ । କେବଳ ସୂର୍ଯ୍ୟକିରଣ ଏହାକୁ ଭେଦକରି ଆସିଲାବେଳେ ତାହା ଆମକୁ ଦିଶିଥାଏ । ଏବେ ମୁଁ ତମକୁ ଆଉ ଗୋଟିଏ ପ୍ରଶ୍ନ ପଚାରୁଛି । ମୁଁ ଜାଣେନା ତମମାନଙ୍କ ମଧ୍ୟରୁ କେହି କେବେ ପୂର୍ଣ୍ଣମୀ ରାତିରେ ନିର୍ମଳ ଆକାଶକୁ ଚାହିଁବାକୁ କୌତୂହଳ ଦେଖାଇଛ କି ନାହିଁ । ତମେ ଜାଣ ଚନ୍ଦ୍ରକିରଣ ହେଲା ଚନ୍ଦ୍ରରୁ ସୂର୍ଯ୍ୟକିରଣର ପ୍ରତିଫଳିତ ଆଲୋକ । ତମେ ଦେଖି ଆଶ୍ଚର୍ଯ୍ୟ ହେବ ଯେ, ସେହି ପୂର୍ଣ୍ଣମୀ ରାତିରେ ନିର୍ମଳ ଆକାଶର ବର୍ଣ୍ଣ ନୀଳ ନୁହେଁ । ତାହାହେଲେ ସୂର୍ଯ୍ୟକିରଣରେ ଯେଉଁ ଆକାଶ ନୀଳ ଦିଶୁଛି, ଚନ୍ଦ୍ରକିରଣରେ କାହିଁକି ସେପରି ଦିଶୁ ନାହିଁ ? ଏହାର ଉତ୍ତର ହେଲା : ଚନ୍ଦ୍ରାଲୋକ ସୂର୍ଯ୍ୟକିରଣଠାରୁ ଖୁବ୍ କମ୍ ଶକ୍ତିଶାଳୀ । ଏହି ଦୁଇଟି ଆଲୋକର ତୀବ୍ରତା ଅନୁପାତ ହିସାବ କରିବାକୁ ବିରାଟ ଗଣିତଜ୍ଞାନ ଦରକାର ନାହିଁ । କେହି ଯୁବ ଗଣିତଜ୍ଞ ଥିଲେ ଏଠି ବସି ହିସାବ କରନ୍ତୁ । ଚନ୍ଦ୍ର କେତେ ବଡ଼ ? ଚନ୍ଦ୍ରାଲୋକର ଉଜ୍ଜ୍ୱଳତା କେତେ ହେବ ? ଏହା ଏକ ଜ୍ୟୋତିର୍ବିଜ୍ଞାନୀୟ ସମସ୍ୟା । ସାଦାସିଧା ହିସାବରୁ ତମେ କହିପାରିବ ଚନ୍ଦ୍ରାଲୋକର ଉଜ୍ଜ୍ୱଳତା ସୂର୍ଯ୍ୟାଲୋକର ଦୁଇ ନିୟୁତ ଭାଗରୁ ପ୍ରାୟ ଭାଗେ ହେବ । ତମେ ଭାବୁଥିବ ଏହା ତ ଅତି ସାମାନ୍ୟ ।

କିନ୍ତୁ ମନେହୁଏ ପୂର୍ଣ୍ଣମୀର ଜ୍ୟୋତ୍ସ୍ନା ଅତି ଉଜ୍ଜ୍ୱଳ । ଏହା କିପରି କାହିଁକି ମନେହୁଏ ? କାରଣ ଆମ ଆଖି ଖୁବ୍ କମ୍ ଆଲୋକକୁ ଅଭ୍ୟସ୍ତ ହୋଇଯାଇଥାଏ । ତେଣୁ ଚନ୍ଦ୍ରାଲୋକ ତା'ର ଏହି ଉଜ୍ଜ୍ୱଳତାରେ ନକ୍ଷତ୍ରମାନଙ୍କୁ ଲୁଚେଇପାରେ ନାହିଁ । କିନ୍ତୁ ଆକାଶ ଏଥିରେ ନୀଳ ଦିଶେ ନାହିଁ । ଚନ୍ଦ୍ରାଲୋକ ଓ ସୂର୍ଯ୍ୟାଲୋକର ଏହି ତୁଳନାରୁ ଏକ ଚମତ୍କାର କଥା ଜଣାପଡ଼ିଗଲା । ଦର୍ଶନ ଧାରଣାର ଏକ ମୌଳିକ ତତ୍ତ୍ୱ ହେଲା – ବର୍ଣ୍ଣର ଧାରଣା କରିବା ପାଇଁ ଉଚ୍ଚସ୍ତରର ଆଲୋକନ ଦରକାର । ସୂର୍ଯ୍ୟାଲୋକ ଉଜ୍ଜ୍ୱଳ ହୋଇଥିବାରୁ ଆକାଶ ନୀଳ ଦିଶେ । ଚନ୍ଦ୍ରାଲୋକ ମଳିନ ହୋଇଥିବାରୁ ବର୍ଣ୍ଣର ଉପଯୁକ୍ତ ଧାରଣା ଜନ୍ମେ ନାହିଁ । ଏହି ତତ୍ତ୍ୱର ଗୁରୁତ୍ୱ ଉପଯୁକ୍ତଭାବେ ଉପଲବ୍ଧି କରାହୋଇ ନ ଥିଲା । ଏବେ ଆମେ ଜାଣିଲେ ବର୍ଣ୍ଣର ଧାରଣା କରିବାପାଇଁ ଉଚ୍ଚ ସ୍ତରରେ ଆଲୋକନ ଦରକାର । ଆଲୋକନ ଯେତେ ତୀବ୍ରତର ହେବ, ବର୍ଣ୍ଣ ସେତେ ଉଜ୍ଜ୍ୱଳତର ହେବ । ଆମେ ଆଲୋକନର ନିମ୍ନ ସ୍ତରକୁ ଅର୍ଥାତ୍ ସୂର୍ଯ୍ୟାଲୋକର ଦୁଇନିୟୁତ ଭାଗରୁ ଭାଗେ ବା ଲକ୍ଷେ ଭାଗର ଭାଗେକୁ ଗଲେ ବର୍ଣ୍ଣଜ୍ଞାନ ପୂରାପୂରି ଲୋପ ପାଏ । ବର୍ଣ୍ଣ ଦର୍ଶନର ଏ ମୌଳିକ ତତ୍ତ୍ୱ କେବଳ ଚିନ୍ତା କରିବା ଓ ପର୍ଯ୍ୟବେକ୍ଷଣରୁ ହିଁ ଜନ୍ମିଲା, ଅନ୍ୟ କେଉଁଥିରୁ ନୁହେଁ । ଏହିପରି ମୁଁ ଅନେକ ଉଦାହରଣ ଦେବି । ଛୋଟ ଦୂରବୀକ୍ଷଣଟିଏ ନେଇ ଅରିୟନ୍ ନୀହାରିକା କିମ୍ବା ନକ୍ଷତ୍ରଗୁଡ଼ିକୁ ଚାହିଁଲେ ତମେ ଏକ ଉତ୍କୃଷ୍ଟ ଉଦାହରଣ ପାଇବ । ଏବେ ଏଇଠି ମୁଁ କହିରଖେ, ଜ୍ୟୋତିର୍ବିଜ୍ଞାନ ପରି ଅନ୍ୟ କୌଣସି ବିଜ୍ଞାନ ଏତେ ମହାନ, ଉଚ୍ଚ ଓ କୌତୂହଳୋଦ୍ଦୀପକ ନୁହେଁ । ଶୁଣିଲେ ଆଶ୍ଚର୍ଯ୍ୟ ହେବ, ଖୁବ୍ ଅଳ୍ପ କେଇଜଣ ଦୂରବୀକ୍ଷଣରେ ଆକାଶକୁ ଅନେଇଥିବେ । ମୁଁ ଏଠି ଯାହା କହୁଛି, ତାହା ତମେ ସହଜରେ ବିଶ୍ୱାସ କରିପାରିବ ନାହିଁ । କେବଳ ଖଣ୍ଡିଏ ଦ୍ୱିନେତ୍ରୀ ବା ବାଇନୋକ୍ୟୁଲାର । ହଁ, ଜ୍ୟୋତିର୍ବିଜ୍ଞାନରେ କିଛି ଶିଖିବାକୁ ହେଲେ ଖଣ୍ଡେ ବାଇନୋକ୍ୟୁଲାର ଦରକାର । ଏହି ଦ୍ୱିନେତ୍ରୀ ପରି ଏକ ସାମାନ୍ୟ ଉପକରଣ ସାହାଯ୍ୟରେ ଯେ ଥରେ ଆକାଶକୁ ଚାହିଁ ନାହିଁ, ସେ ଶିକ୍ଷିତରେ ଗଣା ନୁହେଁ । କାରଣ, ସେ ଯେଉଁ ବିଶ୍ୱରେ ବାସ କରୁଛି, ତାହାର ବିସ୍ମୟକର ଦୃଶ୍ୟମାନ ଦେଖିବାର ସୁଯୋଗ ହରାଇଛି । ତମେ ଏସବୁ ଦେଖିବା ଉଚିତ । ତମେ ଅବଶ୍ୟ ବେଶିକିଛି ଦେଖିପାରିବ ନାହିଁ, ତଥାପି ଯେଉଁ ଅଳ୍ପକିଛି ଦେଖିବ, ତାହା ମନୁଷ୍ୟକୁ ଉନ୍ନତ କରିବା ପାଇଁ ଯଥେଷ୍ଟ । ସେତିକିରୁ ତମର ଧାରଣା ହେବ ଏ ପୃଥିବୀ କି ଚମତ୍କାର ।

ଏବେ ପୁଣି ମୁଁ ଆକାଶର ନୀଳିମା ବିଷୟକୁ ଫେରି ଆସିବି । ଚନ୍ଦ୍ର ଅପେକ୍ଷା ସୂର୍ଯ୍ୟର ତୀବ୍ରତର ଆଲୋକରେ ଆମେ ନୀଳବର୍ଣ୍ଣର ଧାରଣା କରିପାରୁ କାହିଁକି ? ଏବେ ମୁଁ ସେ ଆଲୋଚନା ନ କରି ଆକାଶର ନୀଳିମା ପ୍ରଶ୍ନକୁ ଫେରି ଆସୁଛି ।

ଆମେ ସମସ୍ତେ ଜାଣୁ, ବର୍ଣ୍ଣାଳୀର ସମସ୍ତ ବର୍ଣ୍ଣ ମିଶିଲେ ଧଳା ଆଲୋକ ମିଳେ । ଧଳା ଆଲୋକର ବର୍ଣ୍ଣସବୁ ହେଲା – ଗୋଟିଏ ମୁଣ୍ଡରେ ଗାଢ଼ ଲାଲ ବର୍ଣ୍ଣ, ତା'ପରେ ଫିକା ଲାଲ, ହଳଦିଆ, ସବୁଜ, ନୀଳ ଓ ବାଇଗଣୀ ଆଦି । କିନ୍ତୁ ଆକାଶକୁ ଚାହିଁଲେ ଆମେ ଖାଲି ନୀଳ ଦେଖୁ । ବର୍ଣ୍ଣାଳୀର ଅନ୍ୟ ବର୍ଣ୍ଣସବୁ କ'ଣ ହେଲା ? ଏହା ଏକ ମୌଳିକ ପ୍ରଶ୍ନ ଓ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । କାରଣ ସମୁଦାୟ ସୌର ବର୍ଣ୍ଣାଳୀର ଚାଳିଶଭାଗରୁ ଭାଗେ ତୀବ୍ରତା କେବଳ ନୀଳ ଅଂଶରେ ଥାଏ ଏବଂ ଏହି କ୍ଷୀଣ ଅଂଶକୁ ହିଁ ଆମେ ଦେଖିଥାଉଁ । ବର୍ଣ୍ଣାଳୀର ଅନ୍ୟ ଅଂଶ ଦିଶେ ନାହିଁ । ଏହା ଉଭେଇଯାଏ, ଆଦୌ ଦେଖାଯାଏନି । ଯେତେ ନିରୀକ୍ଷଣ କଲେ ଆକାଶରେ ଲାଲ, ହଳଦିଆ ବା ସବୁଜର ଚିହ୍ନବର୍ଣ୍ଣ ନଥାଏ । ଆମେ ଆଦୌ ଏହାକୁ ଦେଖିପାରୁ ନାହିଁ । ନୀଳ ବର୍ଣ୍ଣାଳୀର ଅନ୍ୟାନ୍ୟ ବର୍ଣ୍ଣକୁ ଘୋଡ଼ାଇ ପକାଏ । ଏହା ଅତି ତାତ୍ପର୍ଯ୍ୟପୂର୍ଣ୍ଣ । କେବେ କେମିତି ଆକାଶକୁ ଅନେଇ ତମେ ଧଳା ବଉଦ ଦେଖିଥିବ । ତାକୁ କପାସୀ ମେଘ କହନ୍ତି, ଖୁବ୍ ବଡ଼ ନୁହେଁ, ମେଞ୍ଚା ମେଞ୍ଚା ହୋଇ କପାତୂଳା ପରି ଆକାଶରେ ଛିନ୍ନ ହୋଇଥାଏ । କି ମନଲୋଭା ଦୃଶ୍ୟ ! – 'ଖଣ୍ଡ ଖଣ୍ଡ ଧଳାମେଘ ସୁନୀଳ ଅମ୍ବରେ' । ସେହି ନୀଳ ଆକାଶ ଓ ଧଳାମେଘକୁ ଚାହିଁ ଅନେକ ସମୟରେ ମୁଁ ଆତ୍ମହରା ହୋଇଉଠେ । ଏଠାରେ ଉଲ୍ଲେଖନୀୟ ଘଟଣା ହେଲା – ଧଳାମେଘ ଘୂରି ବୁଲୁଥିଲା ବେଳେ ଆକାଶ ଗାଢ଼ ନୀଳବର୍ଣ୍ଣ ଧାରଣ କରେ । ଏହାର ଅର୍ଥ ଧଳା ମେଘ ତିଆରି ହେଉଥିଲା ବେଳେ ଆକାଶକୁ ଓଲେଇ ସଫା କରିଦିଏ । ସବୁଆଡୁ ଧୂଳି ଗୋଟେଇ ନେଇ ମେଘ ଦେହରେ ଜମେଇଦିଏ । ଅବଶିଷ୍ଟ ଆକାଶ ସୁନ୍ଦର ଓ ନିର୍ମଳ ହୋଇଯାଏ । ଉଜ୍ଜ୍ୱଳ ଶ୍ୱେତବର୍ଣ୍ଣର ପୃଷ୍ଠଭୂମି ମଧ୍ୟରେ ତମେ ସୁନ୍ଦର ନୀଳବର୍ଣ୍ଣ ଦେଖ । କି ଅଭିନବ ଦୃଶ୍ୟ ! ଯଥାର୍ଥରେ କେତେ ଉପଭୋଗ୍ୟ ! ଏହା ଏକ ସାଧାରଣ ଘଟଣା ଭାବି ତମେ ଏଆଡ଼େ ଟିକିଏ ବି ମନ ଦେଇନ । ତମେ ମତେ ପଚାରି ପାର, ଆକାଶ କିପରି ଓଲେଇ ହୁଏ ? ଏ ବିଷୟରେ ଏକ ଚମତ୍କାର ଗପ ଅଛି । ମୋ ଯୁବକ ବନ୍ଧୁମାନଙ୍କୁ ମେଘ କ'ଣ ବୋଲି ପଚାରିଲେ ସେମାନେ ସଙ୍ଗେ ସଙ୍ଗେ ଉତ୍ତର ଦିଅନ୍ତି, "ମହାଶୟ ! ତାହା ଜଳୀୟବାଷ୍ପ ।" ମେଘ ହେଲା ଜଳୀୟବାଷ୍ପ, ଏହା ଏକ ସାଧାରଣ ଉତ୍ତର । କିନ୍ତୁ ତାହା ନୁହେଁ । ମେଘ ଗୁଡ଼ିଏ କଣିକାର ସମାହାର । ଆମେ ଯେଉଁ ଧଳାମେଘ ଦେଖୁ, ତାହା ଛୋଟ ଛୋଟ ଜଳକଣା । ଜଳ ତ ଓଜନିଆ, ତାହା ତଳକୁ ପଡୁନାହିଁ କାହିଁକି ? ତାହା ବାୟୁରେ ଭାସି ବୁଲୁଛି । ତାହା ଅନ୍ୟ ଏକ ସମସ୍ୟା । ମୁଁ ଗୋଟିଏ ସମସ୍ୟାରୁ ଅନ୍ୟ ଗୋଟିଏ ସମସ୍ୟାକୁ ଚାଲି ଯାଉଛି । ଏବେ ଆମେ ନିଜକୁ ପଚାରିବା – ମେଘ କ'ଣ ? ତାହା

ବାୟୁରେ ଭାସି ବୁଲୁଛି କାହିଁକି ? ଏହିପରି ତମେ ଆକାଶ କାହିଁକି ନୀଳ ବୋଲି ପଚାରି ବସିଲେ ପଦାର୍ଥ ବିଜ୍ଞାନର ସମସ୍ୟା ପରେ ସମସ୍ୟାମାନ ଉଣ୍ଣୁରେଇ ଚାଲିବ । ଏବେ ମଜାକଥା ହେଲା, ଧୂଳିକଣା ନଥିଲେ ମେଘ ତିଆରି ହେବ ନାହିଁ । ସାନ ହେଉ, ବଡ଼ ହେଉ, ଯେଉଁ ପ୍ରକାର ହେଲେ ବି କଣିକା ଆବଶ୍ୟକ । ଏହାକୁ ପଣ୍ଡିତିଆ ଭାଷାରେ କହନ୍ତି "ନ୍ୟୁକ୍ଲିୟସ୍ ବା ନାଭିକ ।" ବାୟୁମଣ୍ଡଳରେ ଧୂଳିକଣା ନଥିଲେ ମେଘ ହେବ ନାହିଁ କି ବୃଷ୍ଟି ହେବ ନାହିଁ । ଦେଖ, ନୀଳ ଆକାଶରୁ ଆରମ୍ଭ କରି ଆମେ କିପରି ମେଘ ସୃଷ୍ଟି, ବୃଷ୍ଟିପାତ ଆଦି କଥାରେ ଯାଇ ପହଞ୍ଚିଲେଣି । ଗୋଟିଏ କଥା ଆଉ ଗୋଟିଏ ପାଖରେ ପହଞ୍ଚାଏ । ଏହା ହିଁ ବିଜ୍ଞାନର ସାରମର୍ମ । ଯେତେ ଗହୀରକୁ ଯାଇ ହେଉଛି ଯାଅ । ତମେ ଏମିତି ବେଶୀ ଦୂର ଆଗକୁ ଯାଇପାରିବ ନାହିଁ । ଯେଉଁ ମୁହୂର୍ତ୍ତରେ ତମେ ଗୋଟିଏ ପ୍ରଶ୍ନ ଉଠାଇବ, ଆଉ ଗୋଟିଏ ପ୍ରଶ୍ନ ଉଠିବ । ସେଥିରୁ ପୁଣି ଗୋଟିଏ, ଗୋଟି ଗୋଟି ହୋଇ ଅନେକଟି । ଶେଷରେ ତମେ ଦେଖିବ, ତମ ପ୍ରଶ୍ନର ଉତ୍ତର ପାଇବା ପୂର୍ବରୁ ତମେ ବିଜ୍ଞାନର ସବୁଆଡ଼େ ଘୂରି ଆସିଲଣି । ଆକାଶ ନୀଳ କାହିଁକି ବୁଝାଇବାକୁ ଯାଇ ମେଘ ସମ୍ବନ୍ଧରେ ମୁଁ ଏସବୁ କହି ବସିଲିଣି । ମୁଁ ଆଉଥରେ କହୁଛି, ମେଘ ବାୟୁମଣ୍ଡଳକୁ ପରିଷ୍କାର କରେ । ମେଘ ସୃଷ୍ଟି ହୋଇ ବାୟୁମଣ୍ଡଳକୁ ନିର୍ମଳ କରେ, ଧୂଳିକଣା ଓ ଅନ୍ୟାନ୍ୟ କଣିକାକୁ ଓଳେଇ ଆଣୁଥିବାରୁ ଆକାଶ ନୀଳ ହୋଇଯାଏ । ଏବେ ଯାହାହେଉ ଆମେ ଗୋଟିଏ ପ୍ରକାର ଉତ୍ତର ପାଇଲେ । ଏହା ଯେତେ ନିର୍ମଳ ହେବ, ନୀଳିମା ସେତେ ଗାଢ଼ ହେବ । ଅବଶ୍ୟ ଏଥିପାଇଁ ଯଥେଷ୍ଟ ଆଲୋକ ଥିବା ଉଚିତ । ଏବେ ତମେ ଉତ୍ତରର ପାଖାପାଖି ଆସିଲଣି । କ'ଣ ପାଇଁ ତୁମେ ଦେଖିପାର ? ଆମେ ନୀଳ ଆକାଶକୁ ଦେଖିବା ଅର୍ଥ ଆମେ ପୃଥିବୀର ବାୟୁମଣ୍ଡଳକୁ ଦେଖୁ । ବାୟୁମଣ୍ଡଳ ଅର୍ଥ ବାୟୁମଣ୍ଡଳର ଗ୍ୟାସ୍ ସବୁକୁ । ଏହି ଗ୍ୟାସ୍ ଆଲୋକ ବିସରଣ କରେ ଏବଂ ଆମେ ଆକାଶର ନୀଳବର୍ଣ୍ଣ ଦେଖୁ । ତଥାପି ଆମେ ଉତ୍ତରଠାରୁ ବହୁତ ଦୂରରେ ଅଛୁ ।

ମୁଁ କହିଛି ସୂର୍ଯ୍ୟାଲୋକର ୪୦ ଭାଗରୁ ଭାଗେ ହେଲା ନୀଳ । ସୂର୍ଯ୍ୟାଲୋକର ଅବଶିଷ୍ଟାଂଶ କ'ଣ ହୁଏ ? ତାହା ହିଁ ପ୍ରଶ୍ନ । ଏହି ପ୍ରଶ୍ନର ଉତ୍ତର କ'ଣ ? ଧଳାମେଘ ଓ ନୀଳ ଆକାଶକୁ ଚାହଁ । ଖଣ୍ଡିଏ ପକେଟ ବର୍ଣ୍ଣବୀକ୍ଷଣ ସାହାଯ୍ୟରେ ସେ ଦୁହିଁଙ୍କି ତୁଳନା କରିପାର । ଖୁବ୍ ନିବିଷ୍ଟ ଚିତ୍ତରେ ଲକ୍ଷ୍ୟ କଲେ ଧଳାମେଘ ଓ ନୀଳ ଆକାଶର ବର୍ଣ୍ଣାଳୀରେ ତମେ ପାର୍ଥକ୍ୟ ଦେଖି ପାରିବ । ଧଳାମେଘ ନିଶ୍ଚୟ ଉଜ୍ଜ୍ୱଳତର । କିନ୍ତୁ ବର୍ଣ୍ଣାଳୀ ଦୃଷ୍ଟିରୁ ନୀଳ ଆକାଶ ଓ ଧଳାମେଘର ବର୍ଣ୍ଣାଳୀ ଦ୍ୱୟ ସମାନ । ଏହା ଗୋଟିଏଆଡୁ ଲାଲରୁ ଆରମ୍ଭ ହୋଇ ନୀଳରେ ଶେଷ

ହୁଏ । କିନ୍ତୁ କୋଟିକରେ ତମେ ନୀଳ ଦେଖ, ଅନ୍ୟଟିରେ ଧଳା ଦେଖ । ଟିକିଏ ଯତ୍ନ ସହକାରେ କଷ୍ଟ କରି ଚାହିଁଲେ ଦେଖିବ ଉଭୟର ଉଜ୍ଜ୍ୱଳତାରେ କିଛି ପାର୍ଥକ୍ୟ ଅଛି । ତମେ ଦେଖିବ ହଳଦିଆ ଓ ଲାଲ ଅପେକ୍ଷାକୃତ ସେତେ ଉଜ୍ଜ୍ୱଳ ନୁହେଁ । ମନେରଖ, ଏସବୁ ତମେ ମନେ ମନେ କଳନା କରୁଛ । ବର୍ଣ୍ଣାଳୀର ନୀଳ ଅଂଶ ସହିତ ଆକାଶର ନୀଳକୁ, ବାଇଗଣି ଅଂଶ ସହିତ ବର୍ଣ୍ଣାଳୀର ଅବଶିଷ୍ଟାଂଶର ଉଜ୍ଜ୍ୱଳତା ତୁଳନା କରୁଛ । ଲାଲ, ହଳଦିଆ ଓ ବାଇଗଣି ତୁଳନାରେ ନୀଳ ଆକାଶର ବିସରିତ ଆଲୋକର ବିଚ୍ଛୁରଣରେ ନୀଳ ଓ ବାଇଗଣି ତୀବ୍ରତର । ତଥାପି ତମେ ଉତ୍ତରଠାରୁ ଦୂରରେ ଅଛ । ବର୍ଣ୍ଣାଳୀର ଅବଶିଷ୍ଟାଂଶ କାହିଁକି ଦେଖା ନ ଯାଏ – ଏପର୍ଯ୍ୟନ୍ତ କୁହା ହୋଇନି । ପ୍ରକୃତରେ ନୀଳ ଆକାଶର ଆଲୋକରେ ସବୁଜ, ହଳଦିଆ ଓ ଲାଲ ଥାଏ । ନୀଳ ଠାରୁ ଏଗୁଡ଼ିକ ଉଜ୍ଜ୍ୱଳତର ହୋଇଥାନ୍ତି । କିନ୍ତୁ ୪୦ ଗୁଣ ନ ହୋଇ ମାତ୍ର ୧୦ ଗୁଣ । ତାହାହେଲେ ଆମେ କାହିଁକି ନୀଳ ଦେଖୁ, ସେଗୁଡ଼ିକୁ ଦେଖିପାରୁନା ? ଏ ପ୍ରଶ୍ନର ଉତ୍ତର ଦେବା କଠିନ । ପ୍ରକୃତ ଉଜ୍ଜ୍ୱଳତା ବର୍ଣ୍ଣାଳୀର ନୀଳଅଂଶରୁ ହୋଇଥାଏ । ଏହା ସରଳ କିନ୍ତୁ ବିସ୍ମୟକର । ଦିନେ ବିଜ୍ଞାନ କେନ୍ଦ୍ରରେ ଏହାକୁ ପରୀକ୍ଷା କରି ଦେଖାଇହେବ ଯେ, ଏହା ଏକ ଅସାଧାରଣ ଘଟଣା ନୁହେଁ । ଏହା ମନୁଷ୍ୟ ଚକ୍ଷୁର ଦୃଷ୍ଟି ସଂକ୍ରାନ୍ତୀୟ ଏକ ମୌଳିକ ତଥ୍ୟ । ଏଥିରେ ଦେଖାଯାଇଛି ବର୍ଣ୍ଣାଳୀର ନୀଳ ବର୍ଣ୍ଣ ତା'ର ଉଜ୍ଜ୍ୱଳତା ତୁଳନାରେ ଅନ୍ୟ ବର୍ଣ୍ଣଗୁଡ଼ିକଠାରୁ ଦର୍ଶନ ଧାରଣା ଜନ୍ମାଇବାରେ ଅଧିକ ପ୍ରଭାବ ପକାଏ । ଏହା ନିମ୍ନୋକ୍ତମତେ ପରୀକ୍ଷା କରାଯାଇପାରେ । ଏହା ଏକ ସହଜ ପରୀକ୍ଷା । କିଛି ପାଣି ନେଇ ସେଥିରେ ଟିକିଏ କପର ସଲ୍‌ଫେଟ୍ ପକାଅ, ତା'ପରେ ସେଥିରେ ଯଥେଷ୍ଟ ପରିମାଣର ଏମୋନିଆ ଦିଅ । ତମେ କ୍ୟୁପ୍ରାମୋନିୟମ୍ ଦ୍ରବଣ ପାଇବ । ଏହା ଅତି ଗାଢ଼ ଏବଂ ତୀବ୍ର ବାଇଗଣି ଆଲୋକ ସଞ୍ଚାରଣ କରିବ । ଏହି ଦ୍ରବଣକୁ ଗୋଟିଏ ପାତ୍ର ବା ସେଲ୍‌ରେ ପୂରାଅ । ସେଲ୍‌ରେ ଧୀରେ ଧୀରେ ଅଧିକ ଜଳ ନିଅ ଏବଂ ଏହା ମଧ୍ୟଦେଇ ଏକ ଉଜ୍ଜ୍ୱଳବତି ଆଲୋକକୁ ଦେଖ । ବର୍ଣ୍ଣ ପରିବର୍ତ୍ତନ ଲକ୍ଷ୍ୟ କରିବ । ଗାଢ଼ ବାଇଗଣି ନୀଳ ଦିଶିବ । ନୀଳ ଶେଷରେ ଫିକା ନୀଳ ହେବ । କିନ୍ତୁ ଶେଷଯାଏ ତାହା ନୀଳ ହୋଇ ରହିବ । କିନ୍ତୁ ଏହି ସେଲ୍‌ର ବର୍ଣ୍ଣାଳୀ ଦେଖିଲେ ଜଣାପଡ଼ିବ ଯେ, ଦ୍ରବଣ ଲାଲ, ସବୁଜ ଆଲୋକ ସଞ୍ଚାରଣ କରୁଛି । ଅବଶ୍ୟ ହଳଦିଆ ଆଲୋକ ସଞ୍ଚାରିତ ହେବ ନାହିଁ । ଏହି ବର୍ଣ୍ଣାଳୀରେ ବହୁତ ଆଲୋକ ଆସୁଛି, ତା ତୁଳନାରେ ନୀଳ ଅଂଶ ସାମାନ୍ୟ ।

ବର୍ଣ୍ଣାଳୀରେ ଯେତେ ବର୍ଣ୍ଣ ଆସୁଛି, ତାକୁ ଦେଖି ପାରିବନି ଏବଂ ଏତେଗୁଡ଼ିଏ ଆସୁଛି ବୋଲି କଳ୍ପନା କରି ପାରିବନି । ଏହାର କାରଣ ତଳେ ଦିଆଗଲା ।

ଦ୍ରବଣ ମଧ୍ୟରେ ସଞ୍ଚାରିତ ଆଲୋକର ବର୍ଣ୍ଣାଳୀ ଦେଖିଲେ ଜାଣିବ କ୍ଲୋପ୍ରାମୋନିୟମ୍‌ର ପ୍ରଭାବରେ ହଳଦିଆ ବର୍ଣ୍ଣର ଆଲୋକ କମିଯାଇଛି । ଏହା ବର୍ଣ୍ଣାଳୀର ଅଳ୍ପ ଅଂଶ ହଳଦିଆ ଆଲୋକକୁ ଅବଶୋଷଣ କରିଛି । ବର୍ଣ୍ଣାଳୀର ଅଳ୍ପ ହେଲେ ମଧ୍ୟ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ । କିପରି ଏହା ହଳଦିଆ ଅଂଶକୁ ଅବଶୋଷଣ କରେ ଓ ବର୍ଣ୍ଣ ଉପରେ ପ୍ରଭାବ ପକାଏ ସେକଥା ଏବେ ବିଚାର କରନା । ଆଲୋକ ନୀଳ ଦିଶିଲା । କାରଣ ହଳଦିଆ ବାଦ୍ ପଡ଼ିଗଲା ଏବଂ ନୀଳ ଦୃଷ୍ଟି ଧାରଣାରେ ପ୍ରଭାବ ପକାଇଲା । ସମୁଦାୟ ବର୍ଣ୍ଣାଳୀରୁ ହଳଦିଆ ଅଂଶର ପ୍ରଭାବ କମାଇଦେଲେ ନୀଳବର୍ଣ୍ଣ ପ୍ରଭାବ ବିସ୍ତାର କରେ । ଏହା ଶରୀର-ବିଜ୍ଞାନର ଏକ ତତ୍ତ୍ୱ । କୌଣସି ବର୍ଣ୍ଣକୁ ଦୃଶ୍ୟମାନ କରିବାକୁ ହେଲେ ହଳଦିଆକୁ କାଢ଼ିନିଅ । ମୁଁ ଭାବୁଛି, ମୋତେ ସମ୍ମାନ ଦେବାପାଇଁ ଏ ନାଲି କାର୍ପେଟ ବିଛା ହୋଇଛି, ଏହାରି ଉଦାହରଣ ନିଅ । ମୁଁ ଆଗରୁ କହୁଛି, ଏଥିରେ ହଳଦିଆ ଅଂଶ ନାହିଁ । ଲାଲ, ସବୁଜ କିମ୍ବା ନୀଳ ପାଇବାକୁ ହେଲେ ସେଥିରୁ ହଳଦିଆକୁ କାଢ଼ିନେବାକୁ ହେବ । ବର୍ଣ୍ଣମାନଙ୍କର ଭୟାନକ ଶତ୍ରୁ ହେଲା ହଳଦିଆ । ସବୁଜପତ୍ରକୁ ଚାହଁ । ସବୁ ପତ୍ର ସବୁଜ, କେବଳ କ୍ଲୋରୋଫିଲ୍ ଥିବାହେତୁ ନୁହେଁ – ଅବଶ୍ୟ କ୍ଲୋରୋଫିଲ୍ ଲାଲକୁ ପ୍ରବଳ ଅବଶୋଷଣ କରେ । କିନ୍ତୁ ବର୍ଣ୍ଣ ସବୁଜ ଦିଶିବାର କାରଣ ହେଲା – ସେଥିରୁ ହଳଦିଆ ବାଦ୍ ପଡ଼ିଛି । କ୍ଲୋରୋଫିଲ୍ ହଳଦିଆ ଅଂଶକୁ ଅବଶୋଷଣ କରି ତାର ତୀବ୍ରତା କମାଇଦିଏ । ଏଥିପାଇଁ ମୁଁ ରେଶମ ପରୀକ୍ଷା କରିଛି । ବାଙ୍ଗାଲୋର ରେଶମ ଉତ୍ପାଦନ ପାଇଁ ପ୍ରସିଦ୍ଧ । ମୁଁ ୨୫ରୁ ୩୦ ଖଣ୍ଡ ବ୍ଲାଉଜ୍ କନା କିଣି ଆଣିଲି । ଏଥିରେ ପରୀକ୍ଷା କରିବାକୁ ଚାହିଁଲି ଯେ, ଏହିଗୁଡ଼ିକର ବର୍ଣ୍ଣାଳୀରୁ ହଳଦିଆ ବର୍ଣ୍ଣ ବାଦ୍ ପଡ଼ିଥିବାରୁ ଏଗୁଡ଼ିକର ବର୍ଣ୍ଣବିଭା ଏପରି ଫୁଟି ଉଠିଛି । ଧାନକ୍ଷେତକୁ ଚାହଁ । ଏହା ଚମତ୍କାର । ଖଣ୍ଡିଏ ବର୍ଣ୍ଣବୀକ୍ଷଣରେ ଧାନକ୍ଷେତକୁ ଅନାଅ ।

ଏହା ଅବିକଳ ନୀଳ ଆକାଶର ବର୍ଣ୍ଣାଳୀ ପରି ଦିଶିବ । ହଠାତ୍ ଚାହିଁଦେଲେ ତଫାତ୍ ଦେଖିବ ଯେ, ବର୍ଣ୍ଣାଳୀର ନୀଳ ଅଂଶ ଧାନକ୍ଷେତ ବର୍ଣ୍ଣାଳୀରେ ନଥିବ । ଧାନଗଛରେ ଥିବା କ୍ୟାରୋଟିନୟଡ଼ ବର୍ଣ୍ଣକ ବର୍ଣ୍ଣାଳୀର ନୀଳ ଅଂଶକୁ ବାଦ୍ ଦେଇଥିବା ଅବଶିଷ୍ଟାଂଶ ବର୍ଣ୍ଣାଳୀ ପ୍ରାୟ ସମାନ ଥିବ । ଆଉ ଟିକିଏ ନିରିଖି ଚାହିଁଲେ ଦେଖିବ – ଧାନକ୍ଷେତ ବର୍ଣ୍ଣାଳୀରେ ହଳଦିଆ ବର୍ଣ୍ଣ ବି ନଥିବ । ପତ୍ରର ସବୁଜବର୍ଣ୍ଣ ଧାରଣା ଜନ୍ମିବା ପାଇଁ ହଳଦିଆ ଅଂଶ ବାଦ୍ ହେବା ଉଚିତ । ସବୁବେଳେ ହଳଦିଆ ବର୍ଣ୍ଣ ଅଧିକ ପ୍ରଭାବ ପକାଇଥାଏ । ଅନ୍ୟ ପକ୍ଷରେ ହଳଦିଆ ବାଦ୍ ପଡ଼ିଗଲେ ନୀଳ ପ୍ରଭାବ ବିସ୍ତାର କରେ । ଦୁଇଟିଯାକ ପରସ୍ପରର ବିରୋଧୀ ଓ ଶତ୍ରୁ । କଥା ହେଲା, ତମେ ଦୁଇଟିକୁ ଅଲଗା କରିପାରିବ । ଏହାର ବୈଜ୍ଞାନିକ ଅର୍ଥ ଆହୁରି

ଗଭୀର । ସମୁଦାୟ ବର୍ଣ୍ଣାଳୀକୁ ତମେ ଦୁଇଭାଗ କରିପାରିବ । ଠିକ୍ ଯେଉଁଠି ନୀଳ ସରିବ, ଠିକ୍ ସେଇଠୁ ବିଭାଗ ଆରମ୍ଭ ହେବ । ବର୍ଣ୍ଣାଳୀର ସେହି ଯେଉଁ ବିଭାଗ ସବୁଜ, ହଳଦିଆ, ନାରଙ୍ଗୀ ଓ ଲାଲ ଆଡ଼କୁ ଲମ୍ବିଯିବ, – ସମୁଦାୟକୁ ହଳଦିଆ କୁହାଯିବ । ଏହା ବାଦ୍ ଅନ୍ୟ ଅଂଶ ନୀଳ । ଏବେ ଗୋଟିକୁ ବାଦ୍ ଦେଲେ ବା କମେଇଦେଲେ ଅନ୍ୟ ଅଂଶର ପ୍ରଭାବ ବଢ଼ିଯାଏ । ନୀଳ ଆକାଶର ଏହା ହିଁ କୈଫିୟତ୍ ଓ ଏହାର ଗୁରୁତ୍ୱ ଅଧିକ । ହଳଦିଆ ଅଂଶ ବାଦ୍ ପଡ଼ିଯିବାରୁ ନୀଳ ପ୍ରଭାବ ବିସ୍ତାର କରି ଆକାଶକୁ ନେଳିଆ କରେ ।

ଆଉ ପାଦେ ଆଗକୁ ଯାଇ କୁହାଯାଇପାରେ ଯେ, ହଳଦିଆ କମାଇବା ଏକ ମୌଳିକ ଗୁଣ । ଏହା କାହିଁକି କମିଯାଏ ? "ବାୟୁମଣ୍ଡଳର ଅଣୁଗୁଡ଼ିକଦ୍ୱାରା ଆଲୋକ ବିଚ୍ଛୁରଣ ହେବା ଫଳରେ" । ସମୁଦାୟ ବକ୍ତୃତାକୁ ମୁଁ ଗୋଟିଏ ବାକ୍ୟରେ କହି ଶେଷକରି ପାରିଥାନ୍ତି । ପତ୍ରର ସବୁଜ ବର୍ଣ୍ଣକୁ ବୁଝାଇବାକୁ ଯାଇ ଠିକ୍ ଜଣେ ଉଦ୍ଭିଦ-ବିଜ୍ଞାନୀ ଯେପରି କହେ–"କ୍ଲୋରୋଫିଲ୍" । ସେମିତି ଆକାଶ ନୀଳ କାହିଁକି ବୁଝାଇବାକୁ ଯାଇ ମୁଁ କହିଥାନ୍ତି "ବାୟୁମଣ୍ଡଳର ଅଣୁଦ୍ୱାରା ଆଲୋକ ବିଚ୍ଛୁରଣ" । ଠିକ୍ ଗୋଟିଏ ବାକ୍ୟ । ସେତେବେଳେ ତମେ ମୋତେ ପଚାରିଥାନ୍ତ–"ତାହାହେଲେ ମହାଶୟ, ଏ ଲମ୍ବା ବକ୍ତୃତା କାହିଁକି ?"

ହେ ମୋର ଯୁବ ବନ୍ଧୁମାନେ, ଏହାର କାରଣ ଅତି ମହତ୍ । ହଠାତ୍ ଏକ କାଟଛାଣ୍ଟ ଉତ୍ତର ପାଇଯିବା ବିଜ୍ଞାନର ଲକ୍ଷ୍ୟ ନୁହେଁ । ପ୍ରସ୍ତୁତ ହୋଇ ରହିଥିବା ଛୋଟ କାଟଛାଣ୍ଟ ଉତ୍ତରରେ ସନ୍ତୁଷ୍ଟ ହୋଇ ରୁହନାହିଁ । ସେତିକିରେ ଚୁପ୍ ହୋଇ ରହି ଯାଅନା । ଚାରିଆଡ଼କୁ ଚାହଁ, ଭାବ, ଏଣୁତେଣୁ ଯାହା ଭାବୁଛ ପଚାର, ସମସ୍ୟାଟିକୁ ଚାରିଆଡ଼ୁ ଦେଖ, ଖୋଳତାଡ଼ କର, ଅନୁସନ୍ଧାନ କର, ବରାବର ଅନୁଧ୍ୟାନ କରି ଚାଲ । ଶେଷରେ ତମେ କିଛି ସତ୍ୟର ସନ୍ଧାନ ପାଇବ, କିନ୍ତୁ ସୀମାରେ ପହଞ୍ଚି ପାରିବ ନାହିଁ । ମୁଁ ଯାହା କହିଲି, ସୀମା ହେଉଛି ମନୁଷ୍ୟର ମସ୍ତିଷ୍କ, କିନ୍ତୁ ତାହା ବହୁତ ଦୂରରେ । ଏହା ହିଁ ବିଜ୍ଞାନର ଆତ୍ମା । ଗୋଟିଏ ସରଳ ପ୍ରଶ୍ନ ପଛରେ କିପରି ଅନୁସରଣ କରିବାକୁ ହେବ, ତାହାର ଏକ ଉଦାହରଣ ଦେବି । 'ଆକାଶ ନୀଳ କାହିଁକି' ବକ୍ତୃତା ଠିକ୍ ମୁଁ ଯେମିତି ଆରମ୍ଭ କରିଛି, ସେମିତି କହି ଚାଲିଥିବି । "ଆକାଶ ନୀଳ, କାରଣ ବାୟୁମଣ୍ଡଳର ଅଣୁ ଆଲୋକ ବିଚ୍ଛୁରଣ କରି ଆକାଶକୁ ଏଭଳି ଆଲୋକିତ କରିଛନ୍ତି ।" ଏହି ଆବିଷ୍କାର ଖୁବ୍ ଆସ୍ତେ ଆସ୍ତେ ଆସିଛି । ଯେଉଁ ମହାତ୍ମା ପ୍ରଥମେ ଏହି କୈଫିୟତ ଦେଲେ, ସେ ହେଉଛନ୍ତି ସ୍ୱର୍ଗତ ଲର୍ଡ଼ ର୍ୟାଲେ ।

ମୋ ଭାବନାରେ ସ୍ୱପ୍ନ ହିଁ ଜୀବନର ସର୍ବୋତ୍କୃଷ୍ଟ ସମୟ । ଏହା ପାଇବା

ନୁହେଁ, – ପାଇବାର ଆଶା । କାଲି କିଛି ମୁଁ ଆବିଷ୍କାର କରିବି, ଟା ପାଇଁ ମୁଁ କଠିନ ପରିଶ୍ରମ କରେ, ଆବିଷ୍କାର କରିପାରିବି କି ନାହିଁ, ତାହା ଦୋସରା କଥା । ଏହିକଥା ଉପରେ ମୁଁ ପୁଣି ଥରେ ଜୋର୍ ଦେବାକୁ ଚାହେଁ । ବିଜ୍ଞାନର ଯାହା ମୋଟାମୋଟି ସାରତତ୍ତ୍ୱ ହେଲା, ତାହା ମନୁଷ୍ୟର ଆତ୍ମା । କବି କ'ଣ କରେ ? ଚିତ୍ରକର କ'ଣ କରେ ? ମହାନ୍ ଶିଳ୍ପୀ କ'ଣ କରେ ? ସେ ମାର୍ବଲ ବା ପଥରଖଣ୍ଡମାନ ନେଇ ତାକୁ ଘଷେ । ଶେଷରେ ସେ ମାର୍ବଲ ଖଣ୍ଡରେ ତା ସ୍ୱପ୍ନକୁ ରୂପାୟିତ କରେ । ସବୁଦିନ ପାଇଁ ଯାହା ସ୍ଥାୟୀ ହୋଇ ରହିବ, ଠିକ୍ ସେଇ ଆଶା, ସବୁଦିନେ ଯାହାର ଜୟଗାନ ହେବ, ତାହାରି ସ୍ୱପ୍ନ ମଣିଷକୁ ପରିଶ୍ରମ କରାଏ । ବିଜ୍ଞାନ କ୍ଷେତ୍ରରେ ଜଣେ ବୈଜ୍ଞାନିକ ସତ୍ୟ ସନ୍ଧାନ ପାଇଁ ଯେଉଁ ଜିଗର ନେଇ ଜୀବନ ଉତ୍ସର୍ଗ କରେ, କଳା କ୍ଷେତ୍ରରେ କଳାକାର କଳାନୈପୁଣ୍ୟ ପାଇଁ ଯେଉଁ ଉତ୍ସାହ ଦେଖାଇଥାଏ, ତାହା ମଧ୍ୟରେ ଆଦୌ ପାର୍ଥକ୍ୟ ନାହିଁ । ଜୀବନର ଶ୍ରେଷ୍ଠତ୍ୱ ସଫଳତା ନୁହେଁ, ଶ୍ରେଷ୍ଠତ୍ୱ ହେଲା ସଫଳତାର ଅଭିଳାଷ । ପ୍ରାପ୍ତି ପାଇଁ ଆମେ ଯେଉଁ ପ୍ରଚେଷ୍ଟା କରିଥାଉଁ, ତାହା ହିଁ ଶେଷରେ ଆମକୁ ସର୍ବୋତ୍କୃଷ୍ଟ ସାନ୍ତ୍ୱନା ଦିଏ । କିଛି ପାଇବା ପାଇଁ ଚେଷ୍ଟା କରିବା ହିଁ କିଛି ପାଇବାର ଆଶା । ତାହା ପୂରଣ ହେଉ ବା ନ ହେଉ, ସେଇ ଚେଷ୍ଟାରେ ଜୀବନ ବିତାଇବା ହିଁ ଉପଯୁକ୍ତ ଜୀବନ । ସତ୍ୟ ସନ୍ଧାନ ପାଇଁ ତମ ଭିତରେ ଯଦି ଜିଗର ନ ଆସେ, ତମେ ଜଣେ ବିଜ୍ଞାନୀ ହେବାକୁ ଆଶା କରିବା ବୃଥା । ତମେ କୌଣସି ଦପ୍ତରରେ ଚାକିରି ପାଇପାର । ତମକୁ ମୋଟା ଦରମା ମିଳିପାରେ । ସେଥିପାଇଁ ମାସ ଶେଷରେ ଚେକ୍‌କୁ ଅପେକ୍ଷା କରିବା ଛଡ଼ା ତମକୁ ଆଉ କିଛି କରିବାକୁ ନ ପଡ଼ିପାରେ । କିନ୍ତୁ ତାହା ବିଜ୍ଞାନ ନୁହେଁ । ଜଣେ ବୈଜ୍ଞାନିକର ବେଉସା ହେଲା – ଜ୍ଞାନ ଅର୍ଜନ କରିବା ପାଇଁ ବାସ୍ତବିକ କିଛି ଚେଷ୍ଟା କରିବା ଦରକାର ।

ଏସବୁ କହିଲା ପରେ ମୁଁ ପୁଣି ନୀଳ ଆକାଶ କଥାକୁ ଆସୁଛି । ମୁଁ ଶେଷ କରି ନାହିଁ । ସତ କହିବାକୁ ଗଲେ ମୁଁ ମୋ ବକ୍ତୃତା ଆରମ୍ଭ କରିଛି । ବାୟୁର ଅଣୁଗୁଡ଼ିକ କାହିଁକି ଆଲୋକ ବିଚ୍ଛୁରଣ କରନ୍ତି ? ଆଲୋକର ତରଙ୍ଗ ତତ୍ତ୍ୱ ଦୃଷ୍ଟିରୁ କହିଲେ ଏହା ଅତି ସ୍ପଷ୍ଟ ହୁଏ ଯେ, ବର୍ଣ୍ଣାଳୀର ଦୀର୍ଘ ତରଙ୍ଗଗୁଡ଼ିକ ବିସରିତ ଆଲୋକରେ କମ୍ ବିଚ୍ଛୁରିତ ହୁଅନ୍ତି । ଏହି ଦୀର୍ଘ ତରଙ୍ଗଗୁଡ଼ିକ ହେଲା – ଲାଲ୍, ହଳଦିଆ ଓ ସବୁଜ ଆଲୋକ । ଅନ୍ୟ ତରଙ୍ଗଗୁଡ଼ିକ ଅଧିକ ବିଚ୍ଛୁରିତ ହୁଅନ୍ତି । ତେଣୁ ଆଖି ସେଗୁଡ଼ିକୁ ବେଶୀ ଓ ଅନ୍ୟକୁ ଅଳ୍ପ ଦେଖେ । ଏପରି କାହିଁକି ହୁଏ ? ଏହାର ଉତ୍ତର ଜଣାଶୁଣା । ବାୟୁମଣ୍ଡଳର ଅଣୁଗୁଡ଼ିକ ତରଙ୍ଗର ଆକାର ତୁଳନାରେ ଅତି କ୍ଷୁଦ୍ର, ଏତେ କ୍ଷୁଦ୍ର ଯେ ବିଶ୍ୱାସ କରି ହେବନି । ଗୋଟିଏ ବଡ଼ ହ୍ରଦକୁ

ଚାହିଁଲେ ତମେ ବୁଝି ପାରିବ । ହ୍ରଦରେ ସୋଲ କି କାଠଟୁକୁରା ଭାସୁଛି, ପବନ ତରଙ୍ଗ ଜଳ ଉପରେ ଖେଳିଯାଉଚି । ତମେ ଦେଖିବ କାଠ ଟୁକୁରା ଥରୁଛି । କାହିଁକି ? କାରଣ କାଠଖଣ୍ଡର ଆକାର ତରଙ୍ଗ ଆକାର ସହ ତୁଳନୀୟ । ମନେକର, ସେତେବେଳେ ଗୋଟିଏ ପ୍ରକାଣ୍ଡ ନୌକା ହ୍ରଦରେ ଯାଉଛି, ନୌକା କେତେ ବଡ଼ ହୋଇପାରେ ମୁଁ ଜାଣେନା, କିନ୍ତୁ ସେହି ବଡ଼ ଡଙ୍ଗାଟି ଏହି ପବନ ଢେଉରେ କାଠ ଟୁକୁରା ପରି ଦୋହଲିବ ନାହିଁ । ବିକ୍ଷୋଭକାରୀ ତରଙ୍ଗ ଓ ବିକ୍ଷୁବ୍ଧ କଣିକାର ଆପେକ୍ଷିକ ଆକାର ତରଙ୍ଗର କଣିକା ଉପରେ ପ୍ରଭାବ ବା କଣିକାର ତରଙ୍ଗ ଉପରେ ପ୍ରଭାବ କେତେ ହେବ, ତାହା ସ୍ଥିର କରେ । କ୍ଷୁଦ୍ର ତରଙ୍ଗ କଣିକା ଦ୍ୱାରା ଅଧିକ ବିଛୁରିତ ହେବାର ଏହା ମୂଳ କାରଣ । ଏ ସମ୍ପର୍କରେ ଯେତେ ଇଚ୍ଛା ସେତେ ପରୀକ୍ଷା ପରୀକ୍ଷାଗାରରେ କରାଯାଇପାରେ । ଏଥିପାଇଁ ବାୟୁର ଅଣୁ ଯୋଗାଡ଼ କରିବା ଦରକାର ନାହିଁ । କିଛି ଜଳ ଆଣ, ସେଥିରେ କିଛି ସାବୁନ ମିଶାଅ । ଧୂଆଁରେ ମଧ୍ୟ ଏ ପରୀକ୍ଷା ଦେଖାଇ ହେବ । କିନ୍ତୁ କଣିକାଗୁଡ଼ିକ ସାନ ହୋଇଥିଲେ କ୍ଷୁଦ୍ର ତରଙ୍ଗ ବିଶେଷଭାବେ ବିଛୁରିତ ହେବ । କଣିକାଗୁଡ଼ିକ ବିଶେଷ ଆଲୋକିତ ନ ହେଲେ ଗାଢ଼ ନୀଳବର୍ଣ୍ଣ ମିଳିବ ନାହିଁ । ଆଲୋକନ ଅତି ତୀବ୍ର ନ ହେଲେ ନୀଳ ଅତି ଫିକା ହୋଇଯିବ । ଏବେ ମୁଁ ନୀଳ ଆକାଶର ବିଛୁରଣରୁ ଅଣୁ ସଂକ୍ରାନ୍ତୀୟ ଅଧ୍ୟୟନକୁ ଆସିଗଲିଣି । ଏଇଠି ବିଷୟ ଆରମ୍ଭ ହେଲା ଓ ଏହିପରି ଚାଲିବ । ପ୍ରକୃତରେ ୧୯୦୧ରେ ମୁଁ ଏ ବିଷୟ ଆରମ୍ଭ କରିଥିଲି । ମୁଁ ଏବେ ଯାହା କହିଲି, କେବଳ ଦୃଷ୍ଟି ସଂକ୍ରାନ୍ତୀୟ କଥାକୁ ଛାଡ଼ିଦେଲେ ଆଗରୁ ଏସବୁ ଖୁବ୍ ଭଲ ଭାବେ ଜଣା ହୋଇଥିଲା । ଏ ଦୃଷ୍ଟି ସଂକ୍ରାନ୍ତୀୟ କଥା ମୋର ଏବେକାର କାମ । ଅଣୁ ସମ୍ବନ୍ଧରେ ଯାହା କହିଲି, ତାହା ୧୯୨୧ ମସିହା ସୁଦ୍ଧା ଜଣାଥିଲା । ସେତେବେଳେ ଆମେ ଭାବୁଥିଲୁ, ଏସବୁର ସନ୍ଧାନ ସରିଯାଇଛି । ଏବେ ଆମେ ଜାଣୁଛୁ, ଦୃଷ୍ଟି-କ୍ଷମତା ଓ ଦର୍ଶନ-ଗୁଣ – ଏସବୁ ବିଷୟରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ ।

ମୋ ଭାଷଣର ବିଷୟ "ଆକାଶର ନୀଳିମା" ନୁହେଁ, ତମେ ଏହା ଭିତରେ ଧରି ପାରିବଣି ବିଷୟ ଥିଲା – "ବିଜ୍ଞାନର ସତ୍ତ୍ୱ ବା ଚେତନା" । ବିଜ୍ଞାନ କ'ଣ ? ଏ ଦେଶରେ ଆମେ ବିଜ୍ଞାନର ପ୍ରଗତି ପାଇଁ କ'ଣ ଆଶା କରିବା ? ଆମର ବିଗତ ବଂଶଧରଙ୍କ ଯୋଗ୍ୟ ଦାୟାଦଭାବେ ଆମେ କ'ଣ କରିପାରିବା ? ତାହା ହିଁ ମୋ ଭାଷଣର ପ୍ରକୃତ ପ୍ରସଙ୍ଗ । ତାକୁ ହିଁ ଆଧାର କରି ମୁଁ ଗୋଟିଏ ବିଷୟବସ୍ତୁ ବାଛିଥିଲି । ସେଇଠୁ କାହାଣୀଟି ଆରମ୍ଭ ହୋଇଥିଲା । ପ୍ରଶ୍ନ ହେଲା – ଆଲୋକ ଅଣୁ ସହ କି ପ୍ରକ୍ରିୟା ଆରମ୍ଭ କରେ ? ଅଣୁର କ'ଣ ହୁଏ ?

ଅଣୁ କ'ଣ ? ଏହିପରି ଗଡ଼ିଚାଲିବ ବିଷୟ । ବିଜ୍ଞାନ ବନ୍ଦ ହୁଏନା, ଚାଲିଥାଏ । ଯେତେ ଦେଖିଲେ ବି ମନେହେବ, ଆହୁରି ଦେଖିବାକୁ ଅଛି । ଏହା ହିଁ ବିଜ୍ଞାନର ଆକର୍ଷଣ । ଅବଶ୍ୟ ଅନ୍ୟମାନେ ତମ ଆଗରେ ଜମି ତମକୁ ବ୍ୟସ୍ତ ନ କଲେ ହେଲା । ସେମାନଙ୍କ ପାଇଁ ବ୍ୟସ୍ତ ହୁଅନା । ପ୍ରକୃତ କଥା ହେଲା, ଏହା ଏକ ଅସରନ୍ତି ଅନୁସନ୍ଧାନ । ପ୍ରତ୍ୟେକ ନୂତନ ଆବିଷ୍କାର, ଅଧିକ ଆବିଷ୍କାର ପାଇଁ ନୂଆ ନୂଆ ବାଟମାନ ଖୋଲିଦିଏ । ନୂଆ ନୂଆ ଉତ୍ତର ପାଇଁ ନୂଆ ନୂଆ ପ୍ରଶ୍ନମାନ ଉଠେ ।

ଏହି ଭାଷଣରେ ମୁଁ ଯାହାସବୁ କହୁଛି, ତାହା ସବୁବେଳେ ପାଗ-ବିଜ୍ଞାନ ସହିତ ମିଶି ରହିଛି ବୋଲି ମୋତେ ମାନିବାକୁ ହେବ । କିନ୍ତୁ ବିଷୟର ପ୍ରକୃତ ମର୍ମ ପାଗ ବିଜ୍ଞାନରେ ନାହିଁ । ପ୍ରକୃତ ମର୍ମ ହେଲା ଆଲୋକ ବିଚ୍ଛୁରଣ । ବାୟୁ ଅଣୁର ସର୍ବଶେଷ ପ୍ରକୃତିକୁ ବୁଝିବାକୁ ହେଲେ ଏହା ଅତି ଶକ୍ତିଶାଳୀ ଉପକରଣ ପରି କାମ କରେ । ତମେ ଅଣୁଗୁଡ଼ିକୁ ଗଣି ପାରିବ । ପ୍ରତ୍ୟେକ ବିଜ୍ଞାନ ଛାତ୍ର ଦେଖିଥିବା ଗୋଟିଏ ପରୀକ୍ଷା ତମେ କରିପାର । ଗୋଟିଏ କାଚ ବୋତଲ, ଗୋଟିଏ ଫ୍ଲାସ୍କ ଓ ଖଣ୍ଡେ ସୋଲ ନିଅ । ଏଥିରୁ ସବୁ ଧୂଳିକଣା ବାହାର କରିଦିଅ । ଏହା ଭିତରକୁ ଆଲୋକ ପକାଅ । ତାହା ସୂର୍ଯ୍ୟକିରଣ ହେଲେ ବି ଚଳିବ । ଅନ୍ୟ ଆଲୋକ ହେଲେ ବି କିଛି କ୍ଷତି ନାହିଁ । କିନ୍ତୁ ଦେଖ ଆଲୋକ ଯେପରି ବାୟୁ ଭିତର ଦେଇ ଯିବ । ତମେ ବାୟୁକୁ ଦେଖି ପାରିବ । ବିଚ୍ଛୁରିତ ଆଲୋକରେ ବାୟୁ ଦୃଶ୍ୟ ହୋଇପାରିଲା । ବାୟୁ ବର୍ଣ୍ଣହୀନ, ସ୍ୱଚ୍ଛ ଗ୍ୟାସ୍ ନୁହେଁ କି ଅଦୃଶ୍ୟ ନୁହେଁ । ବିଚ୍ଛୁରିତ ଆଲୋକରେ ବାୟୁ ଦୃଶ୍ୟ ହେଲା । ଏହା ଏକ ସରଳ ପରୀକ୍ଷା । ପ୍ରତ୍ୟେକ ବିଜ୍ଞାନ-ଛାତ୍ର ଅନ୍ତତଃ ଥରକ ପାଇଁ ତା ଜୀବନରେ ଏହା ଦେଖିବା ଉଚିତ । ବାଷ୍ପର ଅଣୁମାନ ଯେଉଁ ତୀବ୍ରତାରେ ଆଲୋକ ବିସରଣ କରନ୍ତି, ସେଥିରେ ସେହି ବାଷ୍ପର ଅଣୁଗୁଡ଼ିକୁ ଦେଖିହେବ । ଯେତେ ଅଧିକ କଣିକା ରହିବ, ବିସରଣ ସେତେ ତୀବ୍ର ହେବ । ବିସରଣର ଗାଢ଼ତାରୁ ଅଣୁର ସଂଖ୍ୟା ଗଣନା କରି ହେବ । ଏକ, ଦୁଇ, ତିନି, ଚାରି ପରି ଗଣିବା କଥା ମୁଁ କହୁ ନାହିଁ । ଏ ଆଉ ଗୋଟିଏ ପ୍ରକାର ଗଣନା । ମୁଦ୍ରା ଦପ୍ତରରେ ମୁଁ ଦେଖିଛି, ସେମାନେ କିପରି ଟଙ୍କା ଗଣନ୍ତି । ତମେ ଜାଣ ସେ କ'ଣ କରନ୍ତି ? ସେମାନେ ପ୍ରତି ମୁଣିକୁ ଓଜନ କରନ୍ତି । ପ୍ରତି ମୁଣିରେ ୨୦୦୦ ଟଙ୍କା ଥାଏ । ତାହା ବିଶ୍ୱାସ କରାଯାଏ । ତା'ପରେ ମୁଣି ସଂଖ୍ୟାରେ ଗୁଣି ସେମାନେ କୋଟି କୋଟି ଟଙ୍କା ଗଣିଥାନ୍ତି । ସେହିପରି ବାୟୁମଣ୍ଡଳର ଅଣୁ ଗଣା ହୋଇପାରେ । ଏ ଗୋଟିଏ ପ୍ରକାର ହିସାବ । ଗୋଟିଏ ଯନ୍ତ୍ର ଭିତରେ ଚାହିଁ ତମେ ବିଚ୍ଛୁରଣ କିପରି ହେଉଛି, – ଦେଖିପାରିବ । ଅଣୁଟି

ଲମ୍ବା, ଛୋଟ, ବର୍ତ୍ତୁଳ କି ଚାରିକୋଣିଆ, ତାହା ବି ଜାଣିପାରିବ । ନୀଳ ଆକାଶର ଅନୁଧ୍ୟାନ ପ୍ରଶସ୍ତ ଗବେଷଣା କ୍ଷେତ୍ର ଯୋଗାଇବ । ଏ ଗବେଷଣା କ୍ଷେତ୍ର ସୀମାହୀନ । ଏହା ଏବେ ଉଦ୍‌ଘାଟିତ ହୋଇଛି ଓ ଏହାର ଅନୁଧ୍ୟାନ ଚାଲିଛି ।

ଯେତେ ଗଭୀରକୁ ଯିବ, ଗବେଷଣା ଗଭୀରତର ହେବ । ଏବେ ପ୍ରଶ୍ନ ଉଠିବ – ଆଲୋକ କ'ଣ ? ବୋଧହୁଏ ମୁଁ ଏହା ଭିତରକୁ ପଶି ପାରିବି ନାହିଁ । କାରଣ ମୋର ଉଦ୍ଦେଶ୍ୟ ଥିଲା, କିପରି ଏକ ପରିଚିତ ଘଟଣାର ସରଳ କଥାକୁ ନେଇ ମୁଁ ପଦାର୍ଥ ବିଜ୍ଞାନ ଓ ରସାୟନ ବିଜ୍ଞାନର ଜଟିଳ ସମସ୍ୟା ସହିତ ସଂପୃକ୍ତ କରାଇବି । ଆଜି ଆମେ ତାହା ହିଁ ଶିଖିଲେ । ପାଠ୍ୟପୁସ୍ତକ ନ ଅଣ୍ଡାଳି ଏକ ପରିଚିତ ଘଟଣାରୁ ମଧ୍ୟ ଆମେ ବିଜ୍ଞାନ ସମସ୍ୟାମାନ ପାଇପାରିବା । କେବଳ ଆଖି ଖୋଲି ରଖ ଓ ଦେଖ ଯେ, ପୃଥିବୀରେ ତମ ଚାରିଆଡ଼େ ଅନେକ ସମସ୍ୟା ସମାଧାନ ପାଇଁ ଅପେକ୍ଷା କରିଛି । ସେଗୁଡ଼ିକର ସମାଧାନ ପାଇଁ ତମର ପ୍ରତିଭା ଥିବା ଦରକାର । ଦୃଢ଼ ମନୋବଳ ନେଇ ତମେ କିଛି ପାଇବା ପର୍ଯ୍ୟନ୍ତ ତା ପିଛା ଲାଗିଥିବ । ମୋ ଆଗରେ ବସିଥିବା ଯୁବଶ୍ରୋତାଙ୍କ ପାଇଁ ମୋ ବକ୍ତବ୍ୟର ଏହାହିଁ ହେଲା ବାର୍ତ୍ତା । ଏହାର ଉପଯୋଗିତା କ'ଣ ? ଏଠି ଆଉଥରେ ମୋ ଜୀବନର ଦର୍ଶନ କଥା କହି ରଖୁଛି । ଉପଯୋଗିତା କ'ଣ, ପଚାର ନାହିଁ । ଆଗରୁ କହିଛି । ପ୍ରଚେଷ୍ଟା ହିଁ ଯଥେଷ୍ଟ । ଆମ ଭିତରେ ଏକ ଅନ୍ତର୍ନିହିତ ସାମର୍ଥ୍ୟ ଉପଯୋଗ ପାଇଁ ଅଛି । ତାହାହେଲା – ପର୍ଯ୍ୟବେକ୍ଷଣ ଓ ଚିନ୍ତନ । ଆମେ ଏହାର ସଦ୍‌ବ୍ୟବହାର କରିବା ଉଚିତ । ଆମେ ଏହାକୁ ଯେତେ ବ୍ୟବହାର କରିବା ତାହା ସେତେ ମାଜି ହେବ, ତା ସଙ୍ଗେ ସଙ୍ଗେ ବିଜ୍ଞାନ ମଧ୍ୟ । କାରଣ ବୈଜ୍ଞାନିକ ତଥ୍ୟର ଲକ୍ଷ୍ୟ ହେଲା – ମାନବ ଜୀବନର ହିତ ସାଧନ କରିବା । ଏହା ଆପେ ଆପେ ଘଟିଥାଏ । କାରଣ ଆମ ଅତି ନିକଟରେ ଯାହା ସମସ୍ୟା ହୋଇ ଆମକୁ ଅଥୟ କରେ, ବିଜ୍ଞାନ ସଙ୍ଗେ ସଙ୍ଗେ ତାହାର ସମାଧାନ ହାତକୁ ନେଇଥାଏ । ଆମ ପରିବେଶରୁ ଯେଉଁ ସମସ୍ୟା ଜାତ ହୋଇଥାଏ, ତାହା କେବେ ଅର୍ଥହୀନ ବା ଅଦରକାରୀ ହୋଇ ନ ପାରେ । ଅତି ଗୁରୁତ୍ୱପୂର୍ଣ୍ଣ ଓ ଅତି ମୌଳିକ ଗବେଷଣାମାନ ଅତି ତାତ୍ତ୍ୱିକ ଓ ଅସଂଲଗ୍ନ ପରି ଜଣାପଡ଼େ, କିନ୍ତୁ କାଳକ୍ରମେ ତାହା ମନୁଷ୍ୟର ଜୀବନ ଓ କ୍ରିୟାକଳାପକୁ ଗଭୀରଭାବେ ପ୍ରଭାବିତ କରିଥାଏ । ଏଥିରୁ ଆମର ହୃଦ୍‌ବୋଧ ହୁଏ ଯେ, କୌଣସି ଆବିଷ୍କାରର ପ୍ରାରମ୍ଭିକ ଉପଯୋଗିତାରୁ ତାହା ମୂଲ୍ୟବାନ କି ନୁହେଁ – ଜାଣି ହେବନି । ବୈଜ୍ଞାନିକ ଆବିଷ୍କାର ମୂଲ୍ୟବାନ, କାରଣ ଦିନେ ନା ଦିନେ ତାହା ମନୁଷ୍ୟ ଜୀବନ ଓ ମନୁଷ୍ୟର କ୍ରିୟା-ପ୍ରକ୍ରିୟାରେ ତାହାର ଉପାଦେୟତା ପ୍ରମାଣିତ ହେବ । ଏହା ହିଁ ଆଧୁନିକ ବିଜ୍ଞାନର ଇତିହାସ । ବିଜ୍ଞାନ ଆମ ଚାରିଆଡ଼େ

ଯାହା ଅଛି, ସେଗୁଡ଼ିକର ଚେହେରା ବଦଳାଇ ଦେଉଛି । ଏବେ ଯେଉଁ ବୈଜ୍ଞାନିକମାନେ ଯାହା ତାହା ପାଇବା ପାଇଁ ଲକ୍ଷ୍ୟ ନ ରଖି ଜ୍ଞାନର ପ୍ରଗତି ପାଇଁ ମନପ୍ରାଣ ଦେଇ ଲାଗିଛନ୍ତି, ଦିନେ ସେମାନେ ନିଜକୁ ସମଗ୍ର ମାନବ ଜାତିର ହିତାକାଙ୍କ୍ଷୀ ବୋଲି ପ୍ରମାଣିତ କରିବେ ।

* * *

## ଯୁବକମାନଙ୍କୁ ଉପଦେଶ

ହେ ଯୁବଗୋଷ୍ଠୀ ! କେତେ ଆଶା କରି ତମେ ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିଛ । କାଲି ସଂସାରର ସମ୍ମୁଖୀନ ହେବାପାଇଁ ଏ ବିଶ୍ୱବିଦ୍ୟାଳୟରୁ ବିଦାୟ ନେବ । ସେହି ସଂସାର ଅତି କଠୋର ଓ ସହାନୁଭୂତିହୀନ ହୋଇପାରେ । ଆଜି ଉପଦେଶ ଛଳରେ ମୋ ଆଗରେ ବସିଥିବା ଯୁବକ ଯୁବତୀମାନଙ୍କୁ ମୁଁ କହି ରଖୁଛି, ଏଥିପାଇଁ ସେମାନେ ସାହସ ଓ ଆଶା ହରାଇବା ଉଚିତ ନୁହେଁ । ଏ ସଂସାରରେ ଝାଳବୁହା ଶ୍ରମ ବିନା କିଛି ଲାଭ କରିବା ନିରର୍ଥକ । ସାହସିକ ଓ ଉତ୍ସର୍ଗୀକୃତ ଶ୍ରମ ଦ୍ୱାରା କୃତିତ୍ୱ ଅର୍ଜନ କରାଯିବା ଉଚିତ । ଭାରତରେ ଅନେକ ବୈଷୟିକ ସମ୍ପଦ ପୂରି ରହିଛି । ୨୪ ବର୍ଷର ଶିକ୍ଷକତା ଅନୁଭୂତିରୁ ମୁଁ କହିପାରେ, ଜଣେ ଭାରତୀୟର ବୁଦ୍ଧିବୃତ୍ତି ଯେକୌଣସି ବିଦେଶୀୟଙ୍କ ବୁଦ୍ଧିବୃତ୍ତି ସହିତ ତୁଳନୀୟ । ଆମର ଅଭାବ କେବଳ ସାହସ । ଯେକୌଣସି ସ୍ଥାନକୁ ଚଳେଇ ନେବାପାଇଁ ଏକ ନିର୍ଦ୍ଦେଶକାରୀ ବଳ । ଭାରତବର୍ଷର ପରାଜିତ ମନୋଭାବକୁ ସଂପୂର୍ଣ୍ଣ ବିଲୋପ କରିବାକୁ ହେବ । ଆମ ପାଇଁ ଆବଶ୍ୟକ ଏକ ବିଜୟଶୀଳ ମନୋବଳ । ସେହି ବିଜୟ ଉନ୍ମାଦନାରେ ଉତ୍ସାହିତ ହୋଇ ଧରାପୃଷ୍ଠରେ ଆମେ ଆମର ଯୋଗ୍ୟ ସ୍ଥାନରେ ପହଞ୍ଚି ପାରିବା । କେବଳ ସେହି ବିଜୟଶୀଳ ମନୋବଳ ଦ୍ୱାରା ଏକ ଉନ୍ନତ ସଭ୍ୟତାର ଦାୟାଦ ରୂପେ ଆମେ ଏହି ଧରାଧାମରେ ପ୍ରତିଷ୍ଠିତ ହୋଇପାରିବା । ଆମ ମଧ୍ୟରେ ସେହି ଅବିଜିତ ଚେତନାର ଉଦ୍ରେକ ହେଲେ ଆମର ଗୌରବମୟ କୃତିତ୍ୱରୁ ଆମକୁ କେହି ବଞ୍ଚିତ କରି ପାରିବେ ନାହିଁ ।

# ପରିଚ୍ଛେଦ-୧୦

## ବିଶିଷ୍ଟ ଘଟଣାର ତାଲିକା

୧୮୮୮ ନଭେମ୍ବର ୭ - ଜନ୍ମ

୧୯୦୦- ମାଟ୍ରିକ ପାସ, ପ୍ରଥମ ସ୍ଥାନ

୧୯୦୨- ଇଣ୍ଟରମିଡିଏଟ ପାସ ।

୧୯୦୪- ପ୍ରଥମ ହୋଇ ବି.ଏ. ପାସ । ୩ଟି ସ୍ୱର୍ଣ୍ଣ ପଦକ ପ୍ରାପ୍ତ ।

୧୯୦୬- ପ୍ରଥମ ଗବେଷଣାପତ୍ର ପ୍ରକାଶିତ ।

୧୯୦୭- ଏମ୍.ଏ.ରେ ପ୍ରଥମ; ସର୍ବଭାରତୀୟ ପରୀକ୍ଷାରେ ପ୍ରଥମ; ସହକାରୀ ଏକାଉଣ୍ଟାଣ୍ଟ ଜେନେରାଲ ନିଯୁକ୍ତ, ବିବାହ, କଲିକତାରେ ଗବେଷଣା ।

୧୯୧୦- ରେଙ୍ଗୁନ ବଦଳି, ପିତା ରୋଗଗ୍ରସ୍ତ, ନାଗପୁର ବଦଳି ।

୧୯୧୧- ପଦୋନ୍ନତି, କଲିକତା ବଦଳି ।

୧୯୧୨- କର୍ଜନ ଗବେଷଣା ପୁରସ୍କାର ପ୍ରାପ୍ତ ।

୧୯୧୩- ଭାରତୀୟ ଜାତୀୟ କଂଗ୍ରେସର ପଦାର୍ଥବିଜ୍ଞାନ ସଭାପତି ।

୧୯୧୪- ଉଡ୍‌ବର୍ଣ୍ଣ ଗବେଷଣା ପଦକ ।

୧୯୧୭- କଲିକତା ବିଶ୍ୱବିଦ୍ୟାଳୟର ପାଲିତ ପ୍ରଫେସର ।

୧୯୧୯- ଇଣ୍ଡିୟାନ ଆସୋସିଏସନ୍ ଫର୍ କଲ୍‌ଟିଭେସନ ଅଫ୍ ସାଇନ୍‌ସର ସମ୍ପାଦକ ।

୧୯୨୧- ଅକ୍ସଫୋର୍ଡ ଗଲେ, କଲିକତା ବିଶ୍ୱବିଦ୍ୟାଳୟରୁ ସମ୍ମାନଜନକ ଡି.ଏସ୍‌ସି. ଉପାଧି ପାଇଲେ ।

୧୯୨୩- ରାମନାଥନ୍‌ଙ୍କ ସହ ଆଲୋକ ବିଚ୍ଛୁରଣ ପରୀକ୍ଷା ।

୧୯୨୪- ଟରେଣ୍ଟୋ, ଫିଲାଡେଲ୍‌ଫିଆ ଗଲେ, ଏଫ.ଆର.ଏସ. ହେଲେ, ଇଣ୍ଡିୟାନ ଜର୍ଣ୍ଣାଲ ଅଫ୍ ଫିଜିକ୍‌ସ ଆରମ୍ଭ କଲେ ।

୧୯୨୫- ରୁଷିଆ ଗଲେ ।

୧୯୨୮ ଫେବୃୟାରୀ ୧୬- କ୍ରିଷ୍ଣନଙ୍କ ସହିତ ମିଶି ରାମନସିଦ୍ଧାନ୍ତ ଆବିଷ୍କାର ।

୧୯୨୯ ଜୁନ୍ ୩- ପଞ୍ଚମ ଜର୍ଜଙ୍କଦ୍ୱାରା ନାଇଟ ଉପାଧି, ଭାରତୀୟ ବିଜ୍ଞାନ କଂଗ୍ରେସ କଂଗ୍ରେସର ସଭାପତି ।

୧୯୩୦- ଫିଜିକ୍ସରେ ନୋବେଲ ପୁରସ୍କାର ।

୧୯୩୩- କଲିକତା ଛାଡିଲେ, ଇଣ୍ଡିଯାନ ଇନ୍‌ଷ୍ଟିଚ୍ୟୁଟ ଅଫ୍ ସାଇନ୍‌ସେସ୍‌ର ଡିରେକ୍ଟର ।

୧୯୩୭- ଡିରେକ୍ଟର ପଦ ଛାଡି କେବଳ ପ୍ରଫେସର ହେଲେ ।

୧୯୪୮- ଅବସର ଗ୍ରହଣ ।

୧୯୪୯- ରାମନ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟର ଡିରେକ୍ଟର ଓ ପ୍ରଥମ ଜାତୀୟ ପ୍ରଫେସର ।

୧୯୫୪- ଭାରତରତ୍ନ ଉପାଧି, ଲେନିନ ପୁରସ୍କାର ।

୧୯୬୮- ଏଫ.ଆର.ସି.ଏସ୍. ଉପାଧି ପରିହାର ।

୧୯୭୦ ନଭେମ୍ବର ୨୧- ଦେହାନ୍ତ, ରାମନ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ ହତାରେ ସମାଧି ସ୍ଥାପନ ।